# ବାଗ-ବଗିଚ୍ଚର ସୌଦାଗର


ଲେଖକ

ଶ୍ରୀ ଶାନ୍ତନୁକୁମାର ଆଚାର୍ଯ୍ୟ







ପ୍ରକାଶକ

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ—୨

ଦ୍ୱିତୀୟ ସଂସ୍କରଣ
୧୯୭୭

ମୂଲ୍ୟ—ଟ. ୩-୨୫

# ସୂଚୀପତ୍ର



———

( *Paper used for the printing of this book was made availabla by the Government of India at Concessional rate.* )

# ଆମ ଜୀବନର କଥା ଆଉ ନଥା

ଆମ "ଜୀବନ"ର କେତେ କେତେ କଥା
କେତେ ତାର ନଥା
କାନ ପାତ୍ତ କେବେ ଶୁଣିଚ କି, ଟିକି-
-ସାଥୀ ମୋର କେବେ
ଶୁଣିଚ କି କେବେ ଶୁଣିଚ କି ?

ନୁଆଁଇ ତା ପାଖେ ତୁମ ଟିକି ମଥା
ଆମ ନଈ ପଠା,
ବଲ୍ ମାଳ ଟୋଟା, ବାଲି ମାଟି ଆଉ
ପାଣି ଓ ପବନେ
ଖୋଜିଚ କି ତାକୁ ଖୋଜିଚ କି ?

ହାତଫାନ୍ଦି କେବେ ଟିକ କଙ୍କିଟିଏ
ଧରୁ ଧରୁ କେବେ
ପଡ଼ୁଚ ଚମକ୍କି ପଡ଼ୁଚ କି ?

"ଜୀବନ"କୁ ବାନ୍ଧି
ସବୁରେ ତା ସାଙ୍ଗେ
ଖେଳ ଖେଳ ପୁଣି
ବନ୍ଧନ ତାର
ଖୋଲୁଚ କି ସତେ ଖୋଲୁଚ କି ?

ହାତେ ହାତ ଛନ୍ଦି
ବନ୍ଧୁତା କେବେ, ବାନ୍ଧିଚ ତା ସାଥେ
ବାନ୍ଧିଚ କି ସତେ ବାନ୍ଧିଚ କି ?

ଟିକ "ଟୁକେଇ"ର ବନ୍ଧୁ ହେ ! ତେବେ
ଆମ "ଜୀବନ"ର ସବୁ ସବୁ କଥା
ସବୁ ତାର କଥା,

ତୁମର ପରଶେ
ବଞ୍ଚିଚ ତ ଏବେ !
ବଞ୍ଚିଚ !! ଏବେ ବଞ୍ଚିଚ !!!

———

# ଟୁଙ୍କେଇର ଫନ୍ଦି ଫିକର

ନେମା ଡାଏରୀ ପଢ଼ି ବାପା କଅଣ କହିଲେ—

[ ବୁଲୁ ଆମର ଯାହାକୁ ଟୁଙ୍କେଇ ବୋଲି କହୁଛି, ତାକୁ ସ୍ଥାନେ ସ୍ଥାନେ ଲୋକେ ଖଣ୍ଡିଆଭୂତ ବା ବାଲିଭଅଁର ବୋଲି କହନ୍ତି । ଏହାର ଇଂରାଜୀ ନାମ ହେଉଛି "ଆଣ୍ଟଲାଇଅନ୍ (*ANTLION*) ।" ଏ ପୋକଟିର ଜୀବନ ସଂଗ୍ରାମ **ବଡ଼ ବିଚିତ୍ର** । ସାହାଡ଼ର ଶୁଖିଲା ବାଲିଠୁଁ ଆମ ଘର ପିଣ୍ଡା **ପର୍ଯ୍ୟନ୍ତ** ଯେଉଁଠି ଟିକିଏ ଝୁରୁବାଲି ଅଛି, ସେଠି ଏ ପୋକ ଦେଖିବାକୁ ମିଳିପାରେ । ଏହାର ଆହାର ହେଲା ପିମ୍ପୁଡ଼ି; କିନ୍ତୁ କୋଉ ପିମ୍ପୁଡ଼ିର ଗରଜ ପଡ଼ିଛି ଏ ଶୁଖିଲା **ବାଲିରେ** ଫାନ୍ଦପାଣ୍ଡି ବସିଥିବା ଟୁଙ୍କେଇ ବିଚରାର ଗାତରେ ପଡ଼ିବାକୁ ! ତଥାପି ଅଳ୍ପେ ବହୁତେ ଯାହା ପାଏ, ସେତିକିରେ ସେ ବଞ୍ଚେ । ବର୍ଷ ବର୍ଷ ଧରି ଦୀର୍ଘ ତିନିବର୍ଷ କାଳ ଏଇ ବାଲି ଭିତରେ ବସି ସେ ସାଧନା କରୁଥାଏ । ଦିନେ ସମୟ ଆସେ । ସାଧନା ପୂର୍ଣ୍ଣ ହେଲେ ସେ ସମାଧିରେ ବସିଯାଏ । ଏଇଟା **ହେଲା** ତାର ଖୋସା ବାନ୍ଧିବା ବେଳ । ଖୋସା ଭିତରୁ କଙ୍କି ଭଳି ଯେଉଁ **ଜୀବଟି** ବାହାରେ, ସେ କେବଳ ବାହାରେ ବାହାରକୁ, ଜୀବନର ଚକ୍‌କୁ ଆଉ ଘେରିଏ **ବୁଲେଇ** ଦେଇ ଆପେ ମରିଯିବା ପାଇଁ । ମାତ୍ର ଅଳ୍ପ ସମୟ ଭିତରେ ଅଣ୍ଡା ଦେଇ ନିଜର କାମ ସାରିଦେଲା ପରେ କଙ୍କିଟି ମରିଯାଏ ।

ବୁଲୁ ଓ **କମଳ** ଏ ପୋକକୁ ଘରେ ଟିନ ଭିତରେ ପୋଷି କଅଣ ସବୁ ଦେଖିଲେ ସେ କଥା ଏଠି ଲେଖିଛନ୍ତି ସେମାନେ ]

ଆମ ଗାଁ, ଆମ ନଈ, **ନଈର ପଠା**, ପଠା ତଳର ଝର ସବୁ ସୁନ୍ଦର । ସବୁ **ଛବି** ପରି । ପୁଣି ସବୁରେ ଭରି ରହିଛି **ଜୀବନ** । ଆସ, ଆମ ଗାଁକୁ କେବେ ଆସି ଥରେ ଦେଖିଯାଅ, ଆମର ଏଇ ସବୁ ଜୀବନ୍ତ **ଛବିଗୁଡ଼ିକୁ** ।

ଶୀତ **ଦିନେ** ଆମ ନଈପଠାର ରୂପ ଦେଖିଲେ, ଆଖି ଝଲସି ଉଠେ । ନଈର ସରୁଆ ନେଳୀ ପାଣି ଧାରର ପାଖକୁ **ଲାଗି** ଗୋଟିଏ ତମ୍ବାରଙ୍ଗର ବାଲି-ଶେଯ । ତା କଡ଼କୁ ନଈ ପଠା । ପଠାର ସୋରିଷ **ଫୁଲ** ସୁନାପରି ଝଟିକେ । ଆଖୁ **ଫୁଲ** ରୂପା ପରି ଚକ୍ ଚକ୍

କରେ; କିନ୍ତୁ ଏସବୁ ଭିତରେ ସବୁଠୁଁ ମଜା ଜାଗା କେଉଁଗୋଟିକ ଜାଣ ? ଏଇ ଝରଟି ! ନଈବଢ଼ି ପାଣି ଛାଡ଼ିଗଲା ପରେ ପ୍ରତିବର୍ଷ ଗୋଟିଏ ଝର ପଡ଼େ ଏଇଠି, ଏଇ ଗୋଟିଏ ଜାଗାରେ । ଝର ଭିତରୁ ଉଠେ ଗବ୍ ଗବ୍ ହୋଇ ବାଲିମିଶା ପାଣି । ସତେ ଯେମିତି ଟକ୍‌ମକ୍ ହୋଇ ଫୁଟୁଚି ପାଣିଟା । ଏଇ ଝରଣା ଆଉ ଏଇ ନଈପଠାଟି ହଉଚି ଆମର ସକାଳ ସନ୍ଧ୍ୟାର ଖେଳ ଜାଗା । ଝରପାଣିରେ କୁନି କୁନି ମାଛ ଛାଡ଼ି ଆମେ ତାଙ୍କ ଖେଳ ଦେଖୁ । ହଠାତ୍ ହଠାତ୍ ସେ ମାଛ କୁଆଡ଼େ ଅଦୃଶ୍ୟ ହୋଇଯାଏ । କମଳ କହେ, ସେ ମାଛ ପାତାଳକୁ ଚାଲି-ଯାଇଚି । ସେ ଆଉ ଫେରିବ ନାହିଁ । ପାତାଳ ଗୋଟିଏ ସୁନ୍ଦର ଜାଗା । ଏମିତି କେତେ ଖେଳ ଆଉ କଥାବାର୍ତ୍ତା ଭିତରେ ଆମର ସମୟ କଟିଯାଏ ଏଠି ।

କିନ୍ତୁ ସେଦିନ କମଳ ଆଉ ମୁଁ ମାଛ ସାଙ୍ଗରେ ଖେଳୁ ନ ଥାଉ । ଆମେ ଖେଳୁ-ଥାଉ ଗୋଟିଏ ଅଦ୍ଭୁତ ପୋକ ସାଙ୍ଗରେ । ସେ ପୋକଟି କିଏ ଜାଣିଚ ? ସେ ହଉଚି ଆମର ଟୁକେଇ ।

"ବୁଲୁ ଦେଖ୍ ତ " ହଠାତ୍ ପାଟିକାଏ କରି ଉଠିଲା କମଳ ମୋ ପଛଅଡ଼ୁ




[ ବଡ଼େଇ ଭଉଁରିରେ ଖୋଳାହେଲା ଚଳିଆ କେତେଗୁଡ଼ାଏ ଗାତ ଦିଶାଇଥାଏ ବାଲି ଉପରେ ]

ବୁଲପଡ଼ ମୁଁ ଦେଖେତ ଟିକିଏ ଦୂରରେ ଅଣ୍ଟିଏ ସରୁବାଲି ଉପରେ ହାମୁଡେଇ ପଡ଼ି କଅଣ ଦେଖୁଚି କମଳ । କମଳର ଡାକ ଶୁଣି ମୁଁ ମୋ ଥାନରୁ ଉଠି ତା ପାଖକୁ ଗଲି । କମଳ ପାଖରେ ପହଞ୍ଚି ଦେଖେତ କିଛି ନାହିଁ । ଖାଲି ବଡ଼େଇ ଭଉଁରିରେ

ଖୋଳାହେଲା ଭଳିଆ କେତେଗୁଡ଼ାଏ ଛୋଟ ଛୋଟ ଗାତ ହୋଇଚି ବୋଲି ଉପରୁଯାକ । ମୁଁ ବାଲି ଉପରେ ଆଣ୍ଠେଇ ପଡ଼ି ସେଇ ଗାତଗୁଡ଼ିକୁ ଲକ୍ଷ୍ୟ କଲି । ତାପରେ ମୁଁ ଦେଖିଲି ଯେ ସେ ବାଲିରେ ଖାଲି ଗାତ ହୋଇ ନାହିଁ, ଗୋଟିଏ ଗାତ ଭିତରେ ପଡ଼ିଚି ଗୋଟିଏ ବଡ଼ ନାଲି ପିମ୍ପୁଡ଼ି । ଏକଲୟରେ ଚାହିଁଚି କମଳ ସେଇ ପିମ୍ପୁଡ଼ିଟିକୁ । ପିମ୍ପୁଡ଼ିଟି ବିଚରା ଗାତ ଭିତରୁ ବାହାରିବା ପାଇଁ ପ୍ରାଣପଣେ ଚେଷ୍ଟା କରୁଚି; କିନ୍ତୁ ସେ ଯେତିକି ଚେଷ୍ଟା କରୁଚି ବାହାରିବା ପାଇଁ ସେତିକି ପଡ଼ିଯାଉଚି ଗାତ ଭିତରକୁ ବିଚରାଟି ! ଗାତର ଚାରିଆଡ଼ୁ ଝର ଝର ହୋଇ ଝଡ଼ି ପଡ଼ୁଚି ସରୁବାଲିଗୁଡ଼ିକ ତା ଉପରେ । କ୍ରମେ ପିମ୍ପୁଡ଼ିଟି ପୋତି ପୋତି ହୋଇ ଯାଉଚି । ଆମେ ପିମ୍ପୁଡ଼ିଟିକୁ ଲକ୍ଷ୍ୟ କରୁଚୁ, ହଠାତ୍ ଗାତର ସବାତଳୁ ଉଠିଲା ଗୋଟିଏ ଛୋଟିଆ ମୁହଁ । ଚାହୁଁ ଚାହୁଁ ଆଖିପିଛୁଳାକ ଭିତରେ କୁଆଡ଼େ ଉଭେଇ ଗଲା ପିମ୍ପୁଡ଼ିଟି ଆଉ ସେଇ ଛୋଟିଆ ମୁହଁଟି !

"କମଳ !" ମୁଁ ଡାକିଲି ।

ହାତଠାରି ମତେ ଚୁପ୍ ହୋଇ ବସିବାକୁ କହିଲା କମଳ ।

"ଭାଇ ପିମ୍ପୁଡ଼ିଟା ଗଲା କୁଆଡ଼େ ?" ମୁଁ ମୋର ଉଦ୍‌ବେଗ ଚାପି ରଖି ନ ପାରି ପାଟି କରି ପକେଇଲି ।

କମଳ ଆଣ୍ଠୁମାଡ଼ି ବସିଥାଏ ବାଲିଉପରେ ଆଉ ଏକଲୟରେ ଚାହିଁଥାଏ ଗାତ ଭିତରକୁ । ମୋ ପ୍ରଶ୍ନର ଉତ୍ତର ନ ଦେଇ କମଳ ଛକା ଛକା ତାର ହାତ ଦିଇଟାକୁ ବାଲି ଆଡ଼କୁ ନୂଆଇଁ ଦେଲା । ତାପରେ ଚଟ୍‌କରି ଆଞ୍ଜୁଳାଏ ବାଲି ଗାତ ଚାରିପଟୁ ଉଠେଇ ନେଇ କମଳ ପାଟି କରି ଉଠିଲା—

"ଧରା ପଡ଼ିଚି ! ଧରା ପଡ଼ିଚି ! ଟୁକେଇ ଆମର ପଡ଼ିଚି ଧରା !" କମଳର ପାଟିଶୁଣି ମୁଁ ଧାଇଁଗଲି ତା ପାଖକୁ । କମଳ ତା ହାତ ଆଞ୍ଜୁଳା ଉପରେ ବାଲିକୁ ଖେଳେଇ ଧରିଥାଏ । ତା ଆଙ୍ଗୁଠି ସନ୍ଧିରୁ ସରସର ହୋଇ ଝୁରୁ ବାଲିଗୁଡ଼ାଏ ଗଳି ପଡ଼ୁଥାଏ । କେତେବେଳକୁ ଆଞ୍ଜୁଳା ପ୍ରାୟ ଖାଲି ହୋଇଗଲା । ବାକିତକ ବାଲିକୁ ତା ଡାହାଣ ହାତ ପାପୁଲି ଉପରେ ଅଜାଡ଼ି ଦେଇ କମଳ ଖୁବ୍ ସାବଧାନ ହୋଇ ଖେଳେଇ ପକେଇଲା ସେ ବାଲିକୁ । ଦେଖୁ ଦେଖୁ ଗୋଟିଏ ଛୋଟିଆ ପୋକ ବାହାରିଲା ସେଇ ବାଲି ଭିତରୁ । କିନ୍ତୁ ଦୁର୍ଭାଗ୍ୟକୁ ପୋକଟି ମରିଯାଇଥାଏ ।

"ଆହା, ମରଗଲା ! ପୋକଟି ମରଗଲା ?" ମୁଁ ଚାହିଁଲି କମଳ ମୁହଁକୁ ।

କିନ୍ତୁ କମଳ ମୁହଁରେ ଦୁଃଖର କ୍ଲେଶ ମାତ୍ର ଚିହ୍ନ ନ ଥାଏ; ବରଂ ସେ ହସୁଥାଏ । ଯେତେଶକ୍ତି ପୋକଟିକୁ ମାରି ଦେବାର ସେ ଭାରି ଖୁସି ।

ମତେ କିନ୍ତୁ ଭଲ ଲାଗିଲା ନାହିଁ ଆଦୌ । ମୁଁ ଆଉଥରେ କମଳକୁ ପଚାରିଲି— ଆଚ୍ଛା ତୁ ତାକୁ ମାରିଲୁ କାହିଁକି କମଳ ?"

କମଳ କିନ୍ତୁ ତଥାପି ହସି ଦେଲା । ତା ପରେ ମୋ କଥାର ଉତ୍ତର ଦେଲା ଭଳି ସେ ନଈବାଲି ଉପରେ ପୁଣି ଆଣ୍ଠେଇ ପଡ଼ିଲା । ତାପରେ ସେଇ ମଲା ପୋକଟିକୁ ନେଇ ନଈବାଲି ଉପରେ ଆସ୍ତେକରି ଥୋଇଦେଲା । ନଈବାଲିରେ ମୁର୍ଦ୍ଧାରଟି ଥୁଆ ହେବାମାତ୍ରେ କିନ୍ତୁ ସବୁ କଥା ବଦଳି ଗଲା ହଠାତ୍ ।

ନଈବାଲି ବାସ୍ନାରେ ବୋଧହୁଏ କିଛି କୁହୁକମନ୍ତ୍ର ଥିଲା । ବୋଧହୁଏ ହର-ପାର୍ବତୀଙ୍କ କମଣ୍ଡଳରୁ ଜୀବନ୍ନ୍ୟାସ ମନ୍ତ୍ର-ବୋଳା ପାଣି ଟିକିଏ କେତେବେଳେ ଗଳିପଡ଼ିଥିଲା । ସେଇ ବାଲିର ବୋଧହୁଏ ଜୀବନ ପଶିଗଲା ଆମ ମଲା ପୋକଟିର ଦେହରେ । ଦେଖୁ ଦେଖୁ ହଠାତ୍ ଜୀବନ ପାଇଉଠିଲା ଆମ ଟୁକେଇ । କେବଳ ଜୀବନ ପାଇ ଉଠିଲା ନାହିଁ । କାମରେ ତତ୍‌କ୍ଷଣାତ୍ ଲାଗି ପଡ଼ିଲା ସେ । ମୁହୂର୍ତ୍ତକ ପୂର୍ବରୁ ଯୋଉ ପୋକଟି ମଲାଭଳି ଛଟାଗାଳ ପଡ଼ିଥିଲା କମଳର ହାତ ଉପରେ, ମଣିଷ ହାତରୁ ଖସିଲା ମାତ୍ରେ ଜୀବନ ପଶିଗଲା ତା ଦେହରେ । ଦେଖୁ ଦେଖୁ ପୋକଟି ବାଲି ଉପରେ ଚକାଭଉଁରୀ ଖେଳିବାକୁ ଲାଗିଲା । ପେଟକୁ ବାଲିଭିତରକୁ ଠେପିଦେଇ ସେ ପଛୁଆ ପଛୁଆ କରି ଖୁବ୍ ଜୋରରେ ଘେରୁମାରିବାକୁ ଲାଗିଲା । ଗୁହୁଁ ଗୁହୁଁ ବାଲିଭିତରେ ବଡ଼େଇ ଭଅଁର କଲାଭଳି ଗାତଟିଏ ଖୋଳା ହୋଇଗଲା । ପୋକଟି ଉଭେଇ ଗଲା ।

ଏଇ ହେଉଚି ଆମର ଟୁକେଇ ବା ବାଲିଭଅଁର । ଏ ପୋକଟିକୁ ଅନ୍ୟ ଦେଶର ପିଲାମାନେ କି ନାଆଁ ଦେଇ ଡାକନ୍ତି କେଜାଣି, ଆମେ କିନ୍ତୁ ଏହାର ନାଆଁ ଦେଇଚୁ ଟୁକେଇ । ଏଇ ପୋକ ଆମ ନଈପଠାରେ ପ୍ରଥମେ ଆବିଷ୍କାର କଲା କମଳ । ବର୍ତ୍ତମାନ କମଳ କଥା ଟିକିଏ ଶୁଣ ଭାଇମାନେ ।

କମଳ ଆମର ହଉଚି ପୋକ ଜୋକଙ୍କ ବିଷୟରେ ଖୁବ୍ ଜାଣିଲାବାଲା ସଙ୍ଗୀ । ଏଥିପାଇଁ ଆମେ ତାକୁ ପଦବୀ ଦେଇଚୁ "ପୋକ ବିଶେଷଜ୍ଞ !" ପୃଥିବୀର ନାନା ଜୀବଜନ୍ତୁଙ୍କ ଖବର ତ ତାକୁ ଜଣା; ତା' ଛଡ଼ା କମଳର ଗୋଟିଏ ବିଶେଷଗୁଣ ଅଛି । ସେଇଟି ହେଲା କୋଉ ପୋକଙ୍କ ଘର କୋଉଠି ଏକଥା ଖୋଜି ବାହାର କରିବାକୁ ତାକୁ ନିମିଷେ ଲାଗେନାହିଁ । ବହୁଦିନ ହେବ ଆମର ଲକ୍ଷ୍ୟ ଥିଲା ଏଇ ପୋକଟି ଉପରେ ଯାହାକୁ ଆମେ ଝିଂକେଇ ବୋଲି କହୁଚୁ । ଖୋଜି ଖୋଜି ଶେଷରେ ବାହାର କଲା ତାକୁ କମଳ । ତା ପରେ ଚାଲିଲା ଆମର ଗବେଷଣା ଏଇ ଅଦ୍ଭୁତ ପୋକଟି ଉପରେ ।

ବର୍ତ୍ତମାନ ଆମ ଝିଂକେଇଟିକୁ ଆମର ପରୀକ୍ଷାଗାର ଭିତରକୁ ନେବା ପୂର୍ବରୁ ଗୋଟିଏ କଥା କହିଦିଏ । ଏ ପୋକଟି ବିଷୟରେ କାହିଁକି ଆମେ ଏତେ ମନ ଦେଲୁ ସେକଥା ଟିକିଏ ଶୁଣ ।

କଥା ହଉଚି ପ୍ରତିବର୍ଷ ଏଇ ଝିଂକେଇଗୁଡ଼ିକଙ୍କର ଗାତ ଆମେ ଦେଖୁ ଆମ ନଈପଠାରେ । ସେ ପର୍ଯ୍ୟନ୍ତ ଆମେ ଏ ଗାତ ବିଷୟରେ ମନ ଦେଇ ନ ଥାଉ । ଥରେ ଖରାଛୁଟିରେ ଆମେ ନଈପଠାରେ ବୁଲୁ ବୁଲୁ ଏଇ ଗାତଗୁଡ଼ିକୁ ଲକ୍ଷ୍ୟ କଲୁ । ଖରାଛୁଟି ଗଲା । ତାପରେ ଆସିଲା ବର୍ଷାଦିନ । ତାପରେ ମାଡ଼ି ଆସିଲା ଭୟଙ୍କର ନଈବଢ଼ି । ନଈବଢ଼ି ପାଣି ମାଡ଼ି ବୁଡ଼ିକୂଳ ଖାଇଲା । ସେତେବେଳକୁ ବିଚରା ଝିଂକେଇଗୁଡ଼ିକଙ୍କର ବସା ଯାଇ ରହିଥାଏ କୋଉ ରସାତଳରେ । ଦିନେ ନୁହେଁ କି ଦି' ଦିନ ନୁହେଁ । ମାସ ମାସ କାଳ ବଢ଼ିପାଣି ତଳେ ବୁଡ଼ି ରହିଲା ଆମର ନଈପଠା, ଯୋଉଠି ଘରକରନ୍ତି ଆମର ଝିଂକେଇ-ମାନେ । ଚିତାଉ ଅମାବାସ୍ୟ ଆଉ ଜନ୍ମାଷ୍ଟମୀକି ଆସିଲା ଭୟଙ୍କର ନଈବଢ଼ି ବନ୍ଧ ଭାଙ୍ଗି ଆମ ଗାଁରେ ପଶିଲା ପାଣି । ଓହୋ ! କି ହରବର ଆମକୁ ନ କରି ଦେଇଚି ସେଇ ନଈ-ବଢ଼ିଟା । କିନ୍ତୁ ଯାହାହେଉ ଦୁର୍ଗାପୂଜା ପରେ ପରେ ବଢ଼ି କମିଗଲା । ପାଣିତଳୁ ବାହାରି ଧୀରେ ଧୀରେ ଉଭା ହେଲା ଆମର ଦିବ୍ୟସୁନ୍ଦର ନଈପଠାଟି । ଗଦଗଦ ହୋଇ ପୁଣି ପାତାଳରୁ ବାହାରିଲା ଭଳି ବାହାରିଲା ଆମର ଝରଣଟି । ଆମେ ଖେଳିବାକୁ ଗଲୁ ଆଉଥରେ ଆମର ପ୍ରିୟ ନଈପଠାକୁ; କିନ୍ତୁ ଖେଳିବାକୁ ଯାଇ ଆମେ କଅଣ ପ୍ରଥମେ ଆବିଷ୍କାର କଲୁ ଜାଣ ଭାଇ ? ସେଇଟି ହଉଚି ଆମର ଏଇ ଝିଂକେଇମାନଙ୍କର ବସାଘର ! ଏତେ ପାଣି, ଏତେ ସୁଅ, ମଳ ମଳ, ଭଉଁରୀ କାହିଁରେ କିଛି ହେଲାନାହିଁ ଏଇ କ୍ଷୁଦ୍ର ପୋକଗୁଡ଼ିକଙ୍କର ?

୮

ଆଶ୍ଚର୍ଯ୍ୟ କଥା ଏ ନୁହେଁ ? ସତେକି ଝୁଁକେଇମାନେ ଆମର ବଣଜଙ୍ଗଲକୁ ଇସ୍ତମରାରୀ ପଟ୍ଟା କରିନେଇଛନ୍ତି ! ଖରା, ବର୍ଷା, ଶୀତପାହା ଆସୁ ତାଙ୍କ ଘରୁ କେହି ତାଙ୍କୁ ତଡ଼ି ପାରିବ ନାହିଁ ସତେକି !

ଝୁଁକେଇ ବିଷୟରେ ବହୁ ବିସ୍ମୟକର କଥାମାନ ଆମେ ଶୁଣିଛୁ । ବାପା କହନ୍ତି, ଏଇ ପୋକଟି ବୋଧହୁଏ କାହାର ଅଭିଶାପ ପାଇ ଏମିତି ପୋକ ଜନ୍ମ ହୋଇଛି । ପୂର୍ବ-ଜନ୍ମରେ ହୁଏତ ସ୍ୱର୍ଗର କୌଣସି ଦେବଦୂତ ସେ ଥିଲା । କି ଦୋଷରୁ ଅଭିଶାପ ପାଇ ତପସ୍ୟା କରିବା ପାଇଁ ସେ ମର୍ତ୍ତ୍ୟକୁ ଆସିଛି । ବିନା ଆହାରରେ ଦିନଦିନ, ସପ୍ତାହ ସପ୍ତାହ ମାସ, ବର୍ଷ ଏମିତିକି ତିନି ବର୍ଷ ପର୍ଯ୍ୟନ୍ତ ଅନାହାରରେ ଏକାଧାରରେ ରହିପାଇପାରେ ଏ ପୋକଟି । କିନ୍ତୁ ଆଶ୍ଚର୍ଯ୍ୟର କଥା ଏତେଦିନ ଧରି ଉପାସ ରହିଲେ ମଧ୍ୟ ଝୁଁକେଇ ମରେ ନା କି ତାର ଶରୀର ଦୁର୍ବଳ ହୋଇପାଏ ନାହିଁ । କୁଆଡ଼େ ଆଫ୍ରିକା ମହାଦେଶର ଜନପ୍ରାଣୀ ଶୂନ୍ୟ ସାହାରା ମରୁଭୂମିର ଶୁଖିଲା ତାତିଲା ବାଲିରେ ମଧ୍ୟ ପର୍ଯ୍ୟଟକମାନେ ଆବିଷ୍କାର କରିଛନ୍ତି ଏଇ ଝୁଁକେଇର ଗାତ ଗୁଡ଼ିକୁ !

ଏ ସବୁ ପରେ ଝୁଁକେଇ ଜୀବନର ଇତିହାସ ମଧ୍ୟ ଆହୁରି ବିଚିତ୍ର । ବର୍ଷ ବର୍ଷ ଧରି ଉପାସ ରହିବାର କ୍ଷମତା ଥିଲେ ମଧ୍ୟ ଝୁଁକେଇ ଯେ ଆଦୌ ଆହାର ପ୍ରିୟ ନୁହେଁ, ଏକଥା ଠିକ୍ ନୁହେଁ । ଏହାର ଏକମାତ୍ର ଆହାର ହେଲା ପିମ୍ପୁଡ଼ି; ତେଣୁ ଏହାକୁ ଇଂରେଜିରେ *ANT LION* ବୋଲି କୁହାଯାଏ ।

ଝୁଁକେଇର ପିମ୍ପୁଡ଼ି ଶିକାର ଗୋଟିଏ ଲକ୍ଷ୍ୟ କରିବାର କଥା । ଆମେ କେମିତି ତାର ଏ ଶିକାର ଲକ୍ଷ୍ୟ କଲୁ ତା ଆମେ ଲେଖି ରଖିଚୁ । ଆମର ଝୁଁକେଇ ବର୍ତ୍ତମାନ ଆମର ପରୀକ୍ଷାଗାରରେ ବନ୍ଦୀ । ବର୍ତ୍ତମାନ ଚାଲ ଆମର ଲାବରେଟୋରିକୁ ଯିବା । ସେଇଠି ନିରୀକ୍ଷଣ କରିବା ଆମେ ଆମର ଝୁଁକେଇଟିକୁ । ଆସ ! ଆମର ପରୀକ୍ଷା-ଗାରକୁ ଆସ !

———

# ପରୀକ୍ଷାଗାରରେ ଝୁକେଇ

ସକାଳୁ ସକାଳୁ ଆସି କମଳ ହାଜର ହେଲା ଆମ ଘରେ । ଏତେ ସକାଳଟାରୁ ତାକୁ ଦେଖି ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲି । କାଲିକା କଥା ମୋର ମନେ ନ ଥାଏ; କିନ୍ତୁ କମଳର ମୁ ରୁକ୍ ହସଖଣ୍ଡିକ ଦେଖି ତାର ମନକଥା ବୁଝିବାକୁ ଆଉ ଡେରି ଲାଗିଲା ନାହିଁ ମତେ ।

"ବୁଲୁ !" କମଳ କହିଲା, "ଆଉ ଡେରି କର ନାହିଁ । ବିଚରା ଝୁକେଇଟି ଅଧା-ପ୍ରାଣ ହେଲାଣି ମୋ ହାତମୁଠା ଭିତରେ । ଯା, ଜଲଦି ଯୋଗାଡ଼ କର । ଶୀଘ୍ର ଯାଇ ଗୋଟାଏ କାଚ ଥାଳିଆରେ ଅଧଥାଳିଆଏ ଚିନି ଘିନିଆ ।"



( ଆଉ ଡେରି କର ନାହିଁ ।
ବିଚରା ଝୁକେଇଟି ଅଧାପ୍ରାଣ ହେଲାଣି ମୋ ହାତ ମୁଠା ଭିତରେ )

"ଚିନି ?" କମଳର କଥା ମୁଁ ବୁଝିପାରିଲି ନାହିଁ କିଛି । କେବଳ ତା ମୁହଁକୁ ବଲବଲ କରି ଅନେଇ ମୁଁ ପଚାରିଲି, "ହଇରେ ଚିନି କଅଣ ହବ ?"

ମୋ କଥାର ଉତ୍ତର ନ ଦେଇ ବ୍ୟସ୍ତ ହୋଇ ଉଠି କମଳ କହିଲା—"ଆରେ ଜଲ୍‌ଦି ଆଣନା—ତତେ ଏଇଟିକି କୈଫିୟତ୍ ଦଉ ଦଉ ସେତେବେଳେ ମୋ ଝୁକେଇ ପ୍ରାଣ ଯିବଣି ।"

ଡେରି ନ କରି ଅଧଥାଳିଆଏ ଚିନି ଧରି ମୁଁ ଆସି ପହଞ୍ଚିଲି । କମଳ ମୋ ହାତରୁ ଥାଳିଆଟିକି ନେଇଯାଇ, ସେଥିରେ ତା'ହାତକୁ ଝାଡ଼ିଦେଲା । ସାଙ୍ଗେ ସାଙ୍ଗେ ତା ମୁଠା ଭିତରୁ ଝଡ଼ିପଡ଼ିଲା ଗୋଟିଏ ଛୋଟିଆ ପୋକ । ଏଇଟି ଯେ ସେଇ ଟୁକେଇ, ଏଥିରେ ଆଉ ତିଳେମାତ୍ର ସନ୍ଦେହ ମୋର ନ ଥିଲା । କାରଣ ସାଙ୍ଗେ ସାଙ୍ଗେ ମଲାରୁ ଜୀଇଁଲା ଭଳି ଚେଇଁ ଉଠିଲା ଟୁକେଇ । ଚିନିକୁ ନଈବାଲି ବୋଲି ଭାବି ସେ ତତ୍‌କ୍ଷଣାତ ତା କାମରେ ଲାଗିପଡ଼ିଲା । ପଛେଇ ପଛେଇ ସେ ଗୋଟାଏ ଠାଆରେ ବୁଲିବାକୁ ଲାଗିଲା ଗୋଟିଏ ଚକ୍ରୀ ଭଳି । ଚାହୁଁ ଚାହୁଁ ତାର ପେଟର ଗୋଜିଆ ଅଂଶଟା ଦ୍ୱାରା ଚିନି ଭିତରେ ଭଅଁରେଇ ଦେଇ ସେଇ ଗାତ ଭିତରେ ଉଭେଇଗଲା ସେ ।

ଏତେବେଳଯାକେ ଆମେ ଦହେଁ ଚାହିଁଥିଲୁ ଚିନିଥାଳିଆଟା ଭିତରକୁ । ବର୍ତ୍ତମାନ ଯେମିତି ଟୁକେଇଟି ଅନ୍ତର୍ଦ୍ଧାନ ହେଇଗଲା ମୁଁ ଚାହିଁଲି କମଳ ମୁହଁକୁ ।

ଏହା ପରେ କଅଣ ହେବ ? ମୁଁ କମଳର ଆଦେଶକୁ ଅପେକ୍ଷା କରି ରହିଲି ।

“କରେ ଚାହୁଁଚ କଅଣ ?” ବଡ ମଣିଷଙ୍କ ଭଳି ମତେ ତାଗିଦ୍ କରି କମଳ କହିଲା, “ଯା, ସେଇଟାକୁ ଗୋଟିଏ ଯଳଯନ୍ତ୍ର କରି ଏଥର ରଖ । ବର୍ତ୍ତମାନ ଟୁକେଇ ଆମର ଗବେଷଣାଗାରରେ ରହିବ । ହଁ, ସାବଧାନ ! ଜଳଯନ୍ତ୍ର ନ କଲେ ହୁଏତ ଟୁକେଇ ପଳେଇ ଯାଇପାରେ ! ନଚେତ୍ ଚିନି ଲୋଭରେ ଏକସଙ୍ଗେ ବହୁତଗୁଡ଼ିଏ ପିମ୍ପୁଡ଼ି ଘେରିଯାଇ ଟୁକେଇର ଘରକୁ ଆକ୍ରମଣ କରିପାରନ୍ତି । ଯା, ଜଲଦି ଯା, ଆଗ ଗବେଷଣାଗାର ଠିକ୍ କର !”

ଆମ ଘରର ବାଡ଼ପଟେ ବଖରାଏ ଛୋଟ ଘର ଥାଏ । ସେ ଘରେ ଘରର ସବୁତକ ଭଙ୍ଗା ଦଦରା ଆଉ ଅକାମି ଜିନିଷ ରହୁଥିଲା । ଭଙ୍ଗାକାଚବୋତଲଠୁଁ ଆରମ୍ଭ କରି କେତେ ହାଣ୍ଡି, ପେଟରା, ବାକ୍ସ, କାଠ ଜିନିଷ ଏମିତିକି ଭଙ୍ଗା ହାରମୋନିୟମ ଗୋଟାଏ ବି ପଡ଼ିଥିଲା ସେ ଘରେ । ବହେ ଅଳନ୍ଧୁ ଲାଗିଥିଲା କାନ୍ଥଯାକ । ମୂଷାମାଟି ଠାଏଠାଏ ଗଦା ହୋଇଥିଲା । ବର୍ତ୍ତମାନ ସେଇ ଘର ବଖରାଟି ଆମର ସଫା ହେଇଚି । କମଳ ଆଉ ମୁଁ ଲାଗି ଲାଗି ଚାରିଦିନ ଭିତରେ ଏ ଘର ସଫା କରିଚୁ । ବର୍ତ୍ତମାନ ଏଇ ଘରଖଣ୍ଡିକ ହେଇଚି ଆମର ଲାବରେଟେରୀ । ଏଇ ଘରେ ବି ରହିବ ଟୁକେଇ, ତାର ଜୀବନକାଳ ଶେଷହେବା

ପର୍ଯ୍ୟନ୍ତ । ଏଇ ଘରେ ରହୁଛନ୍ତି ଆମର ଅନେକ କେତେ ପତଙ୍ଗ ବନ୍ଧୁ—ପିମ୍ପୁଡ଼ି, କ୍ରିକେଟ୍, ବୁଢ଼ିଆଣୀ ଇତ୍ୟାଦି । ଆମେ ଏମାନଙ୍କୁ ଜୀବ-ବୈଜ୍ଞାନିକଙ୍କ ଭଳି ମାରିଦେଇ ଛୁରୀରେ କାଟି ପରୀକ୍ଷା କରୁନାହୁଁ । ଏମାନେ ଆମର ବନ୍ଧୁ, ତେଣୁ ସେମାନେ ଆମର ବନ୍ଧୁପରି ଏ ଘରେ ଚଳନ୍ତି । ଆମେ କେବଳ ପ୍ରତ୍ୟେକର ଗତିବିଧିକୁ ନିରୀକ୍ଷଣ କରୁ । ଆମେ ଆମର ବନ୍ଧୁ-ମାନଙ୍କୁ ବଡ଼ ହେପାଜତ୍ କରି ରଖୁ । ବର୍ତ୍ତମାନ ଶୁଣ ବନ୍ଧୁ, ହୁକେଇକୁ ଆମେ କିପରି ରଖିଲୁ ଆମ ଲାବରେଟୋରୀରେ ଓ କିପରି ଏହାର ଗତିବିଧିକୁ ନିରୀକ୍ଷଣ କରିପାରିଲୁ ।

ପ୍ରଥମେ ଆମର କର୍ତ୍ତବ୍ୟ ହେଲା ଗୋଟିଏ ଜଳଯନ୍ତ୍ର ନିର୍ମାଣ କରିବା । ଜଳଯନ୍ତ୍ର ନିର୍ମାଣ କିଛି କଷ୍ଟ କାମ ନୁହେଁ । ମୁଁ ଦେଖିଛି ପିମ୍ପୁଡ଼ିମାନଙ୍କ ଦାଉରୁ ଖାଇବା ଜିନିଷକୁ ବଞ୍ଚେଇବା ପାଇଁ ବୋଉ ଅନେକଥର ଜଳଯନ୍ତ୍ର କରି ସେଗୁଡ଼ିକୁ ସାଇତି ରଖେ । ଗୋଟିଏ



( ଏହିଭଳି ଗୋଟିଏ ଜଳଯନ୍ତ୍ର ପ୍ରଥମେ ନିର୍ମାଣ ହେଲା ଆମ ପରୀକ୍ଷାଗାରରେ )

ବଡ ଥାଳୀରେ ପାଣି ଭର୍ତ୍ତି କରି, ପାଣି ଭିତରେ ଗୋଟିଏ କଂସା ସେ ରଖେ । କଂସାଟି ଏମିତି ରଖା ଯାଇଥାଏ ଯେ ଥାଳୀରେ ଫନ୍ଦ ଆଦୌ ତା ଦେହକୁ ଲାଗିକରି ରହେ ନା । ଥାଳୀ-ଭିତରେ କଂସାଟି ଗୋଟିଏ ଦ୍ୱୀପ ପରି ରହିଥାଏ । କଂସାଟି ଏପରି ରହିବା ଫଳରେ କଂସା ଉପରେ ପ୍ଲେଟ୍‌ରେ ରଖାଯାଇଥିବା ଖାଦ୍ୟ ଜିନିଷରେ ପିମ୍ପୁଡ଼ି ଲାଗି ପାରନ୍ତି ନାହିଁ । କଂସା

ଚାରିପାଖେ ପାଣି ଘେରିଥିବାରୁ ପିମ୍ପୁଡ଼ିମାନେ ଭରସି କରି କଂସା ଅଡ଼କୁ ଯିବାକୁ ଚେଷ୍ଟା କରନ୍ତି ନାହିଁ; ଏହାହିଁ ହେଉଛି ଜଳଯନ୍ତ୍ର ।

ଏହିଭଳି ଗୋଟିଏ ଜଳଯନ୍ତ୍ର ପ୍ରଥମେ ନିର୍ମାଣ କରାହେଲା ଆମ ପରୀକ୍ଷାଗାରରେ । ଗୋଟିଏ ବଡ଼ ଥାଳୀ ଭିତରେ ଅଧଥାଳୀଏ ପାଣି ଦେଇ ତା ଭିତରେ ଖଣ୍ଡେ ଇଟା ପକାଇ ଜଳଯନ୍ତ୍ର ତିଆରି ହେଲା । ସେ ପଥର ଉପରେ ଚିନିଥାଳୀଆଟା ରଖାଗଲା । ତାପରେ ଖଣ୍ଡେ ସ୍ୱଚ୍ଛ ପଲିଥିନ୍ ବ୍ୟାଗରୁ (ଯୋଉଁଥିରେ ନୂଆଲୁଗା ସବୁ ରଖାଯାଇ ପ୍ୟାକ୍ କରାଯାଇଥାଏ) ଖଣ୍ଡେ ଛୋଟ କରି ଟୁକୁରା ଚିରି ଏହି ଚିନିଥାଳୀଆଟିକୁ ଘୋଡ଼େଇ ଦିଆଗଲା । ଏହାଫଳରେ ଟୁକେଇର ଘରଟି ଥାଳୀଆ ଭିତରେ ଘୋଡ଼େଇ ହୋଇ ରହିବା ସଙ୍ଗେ ସଙ୍ଗେ ଆମେ ବି ତାର ଗତିବିଧି ବାହାରୁ ନିରୀକ୍ଷଣ କରିପାରିଲୁ । ଏହା ପରେ ଆରମ୍ଭ ହେଲା ଆମର ପରୀକ୍ଷା ଆଉ ମଧ୍ୟ ଟୁକେଇ ସହିତ ଖେଳ ।

ପ୍ରଥମେ ଆମେ ଲକ୍ଷ୍ୟ କଲୁ ଏଇ ଟୁକେଇ ବା ଆଣ୍ଟ୍‌ଲାୟନ୍ କେମିତି ତାର ଶିକାରକୁ ଧରେ । ଟୁକେଇର ପ୍ରଧାନ ଶିକାର ହେଉଛି ପିମ୍ପୁଡ଼ି ବା "ଅଣ୍ଟ୍ (*ANT*) ।" ତେଣୁ ଏହାକୁ ଆଣ୍ଟଲାୟନ୍ (*ANTLION*) ବୋଲି ଇଂରେଜିରେ କୁହାଯାଏ । ଟୁକେଇ ପିମ୍ପୁଡ଼ି ଶିକାର ଗୋଟିଏ ପରୀକ୍ଷା କରିବାର ଯୋଗ୍ୟ କଥା । ପ୍ରଥମେ ଗୋଟିଏ ପିମ୍ପୁଡ଼ି ଆଣି ଆମେ ଏଇ ଟୁକେଇର ଗାତ ପାଖରେ ଛାଡ଼ିଦେଉ । ପିମ୍ପୁଡ଼ିଟି ଚିନି ଉପରେ ରହିଲେ ସୁଦ୍ଧା ସେତେବେଳେ ଚିନି ଆଡ଼କୁ ଆଉ ତାର ମନ ନ ଥାଏ । ସେ ଆମର ଆକ୍ରମଣ ଆଉ ଟୁକେଇର ଗନ୍ଧରେ ବୋଧେ ଅସ୍ତବ୍ୟସ୍ତ ହୋଇପଡ଼େ । ତା ପରେ ସେ ଡଗ ଡଗ ହୋଇ ଚିନି ଉପରେ ଚାଲିବାକୁ ଆରମ୍ଭ କରେ । ଏମିତି କରୁ କରୁ ଦୈବାତ୍ ସେ ଯାଇ ହାବୁଡ଼ି ଯାଏ ଟୁକେଇ ଗାତ ପାଖରେ । ଅନେକ ସମୟରେ ପିମ୍ପୁଡ଼ି ଏ ଗାତ ଭିତରକୁ ପଶିବାକୁ ଆଦୌ ପସନ୍ଦ କରେ ନା; କିନ୍ତୁ ବେଳେ ବେଳେ କାଣ ଭାବି ସେ ମୁହେଁଇ ଯାଏ ଗାତର ଟିକିଏ ଭିତରକୁ । ତା ପରେ ଆଉ ଯାଏ କୁଆଡ଼େ ? ଯେତେବେଳେ ସେ ବୁଝେ ଯେ ସ୍ୱର୍ଗରୁ ଯାଇ କାନ୍ତାରରେ ସେ ପଡ଼ିଲାଣି ସେତେବେଳକୁ ସର୍ବନାଶ । ନେଡ଼ିଗୁଡ଼ ଯାଇ କହୁଣୀରେ ହେଉଥାଏ । ପିମ୍ପୁଡ଼ି ଜାଣିପାରେ ଯେ ସିଂହର ଗୁହା ମୁହଁରେ ଯାଇ ସେ ହାଜର ହୋଇଗଲାଣି । ତା ପରେ ସେ ଛାଟିପିଟି ହୋଇ ଉଠେ ପ୍ରାଣ ବଞ୍ଚେଇ ଗାତରୁ ଉଠି ପଳେଇବା ପାଇଁ । ମାତ୍ର ଟୁକେଇର ଫାନ୍ଦ ଭିତରୁ ଉଠିବା

କ'ଣ ଏତେ ସହଜ ? ପିମ୍ପୁଡ଼ି ବିଚରା ଯେତିକି ଛାଟିପିଟି ହୁଏ ସେତିକି ସେତିକି ସେ ତାର ଅଜାଣତରେ ଯମମୁହଁକୁ ଟାଣିହୋଇଯାଏ । ଶେଷରେ ଗଡ଼ଗଡ଼ ସେ ଯାଇ ଗାତର ସର୍ବାତଳେ ପଡ଼ଯାଏ । ଏତିକିବେଳେ ଦେଖିବାକୁ ମିଳେ ଆମ ଟୁକେଇର ସ୍ୱରୂପ । ଗୃହ୍ମୁ ଗୃହ୍ମୁ ଗାତ ଭିତରୁ କୁଆଡେ଼ ଉଭେଇ ଯାଏ ପିମ୍ପୁଡ଼ିଟା । ମୁହୂର୍ତ୍ତିକ ପୂର୍ବରୁ ଯୋଉ ପିମ୍ପୁଡ଼ିଟି ବିଚରା ସିଂହ ମୁହଁରୁ ଜୀବନ ବଞ୍ଚେଇବା ପାଇଁ ଛାଟିପିଟି ହେଉଥାଏ ସେ ଆଉ ସେଠି ନ ଥାଏ ।

ବର୍ତ୍ତମାନ ପିମ୍ପୁଡ଼ିଟି ଅନ୍ତର୍ଦ୍ଧାନ ହୋଇଯିବା ମାତ୍ରେ ତୁମେ କାଳବିଳମ୍ବ ନ କରି ଟୁକେଇର ଗାତ ସମେତ ଚାରି ପୁଳାକୁ ଖୋଳେଇ ପକାଅ । ତୁମ ଆକ୍ରମଣରେ ଡରିଯାଇ ଟୁକେଇ ତା ଆହାରକୁ ଛାଡ଼ଦେଇ ମଲ୍ଲଭଲ୍ଲ ହଟାଗାଳ ପଡ଼ିଯିବାର ଦେଖିବ; କିନ୍ତୁ ତୁମେ ଦେଖି ଆଶ୍ଚର୍ଯ୍ୟ ହେବ ଯେ କେବଳ ଟୁକେଇଟି ତ ମଲ୍ଲଭଲ୍ଲ ପଡ଼ନାହିଁ, ତା ମୁହଁରୁ ମୁକୁଳି-ଥିବା ପିମ୍ପୁଡ଼ିଟା ମଧ୍ୟ ନିଶ୍ଚଳ ହୋଇ ପଡ଼ଯାଇଚି । କଥା କଅଣ ? ଗୋଟାଏ ମୁହୂର୍ତ୍ତି ମଧ୍ୟରେ କଅଣ ହୋଇଗଲା ପିମ୍ପୁଡ଼ିର ? ସେ କଅଣ ଏତେଶୀଘ୍ର ମରିଗଲା ? ହଁ, ମରିଯାଇଚି; ତେବେ ଏହା ହେଲା କିପରି ?

ବର୍ତ୍ତମାନ ଉପର ପ୍ରଶ୍ନର ଉତ୍ତର ଜାଣିବା ପାଇଁ ଆମେ ଆମ ଟୁକେଇକୁ ନାନା-ପ୍ରକାରେ ପରୀକ୍ଷା କଲୁ । ବହୁଦିନ ଧରି ତାପାଇଁ ଗୋଟିଏ ଗୋଟିଏ ପିମ୍ପୁଡ଼ି ଆହାର ଯୋଗାଇ ପରୀକ୍ଷା କଲା ପରେ ଆମେ ଜାଣିଲୁ ଟୁକେଇର ଅମର ପିମ୍ପୁଡ଼ି ଶିକାର ପାଇଁ ପ୍ରଧାନ ଅସ୍ତ୍ରଟି କଅଣ । ଏ ଅସ୍ତ୍ରଟି ହେଉଚି ଟୁକେଇର ଯୋଡ଼ । ଯୋଡ଼ିଏ ଅତି ଛୋଟ ଆଉ ସରୁଆ ଦାଆକୁ ମୁହଁ ମୁହଁ କରି ଯୋଡ଼ ଏକାଠି ଧରିଲେ ଯେମିତି ଦେଖାଯିବ, ଟୁକେଇର ଯୋଡ଼ଟି ସେହିଭଳି । ଏହାର ଦ୍ୱାରା ସେ ତାର ଶିକାରକୁ ଅକ୍ତିଆର କରେ । ଖାଲି ସେତିକି ନୁହେଁ । ଏ ଦାଆର ଧାରୁଆ ଦାନ୍ତଗୁଡ଼ିକ କିଛି ସାଧା ଦାନ୍ତ ନୁହେଁ । ଏଗୁଡ଼ିକ ତାର ବିଷାକ୍ତ ଦାନ୍ତ । ଶିକାରକୁ ଧରି କାବୁ କରି ପକେଇବା ସଙ୍ଗେ ସଙ୍ଗେ ଏଇ ବିଷଦାନ୍ତରୁ ଟିକିଏ ଟିକିଏ ବିଷ ବାହାରିଆସି ଶିକାରଦେହରେ ପଶେ । ପିମ୍ପୁଡ଼ି ପକ୍ଷରେ ଟୁକେଇ ଏ ବିଷ ଏତେ ସାଙ୍ଘାତିକ ଯେ ଆଖିପିଛୁଡ଼ାକ ଭିତରେ ଏ ବିଷଜ୍ୱାଳାରେ ପିମ୍ପୁଡ଼ି ଟଳି ପଡ଼େ । ତାପରେ ଟୁକେଇ ତାର ଆହା ଖାଏ ।

ଟୁକେଇର ଆହାର ଖାଇବା ଅଉ ହଜମ କରିବା ଉପାୟ ମଧ୍ୟ ସ୍ୱତନ୍ତ୍ର, ଅଉ ବିଚିତ୍ର । ଟୁକେଇ ତା ଆହାରକୁ ଗେ୍ଳ ବଳ ଗେ୍ଳବେଇ ପୂରାପୂରି ଖାଇଦିଏ ନାହିଁ । ପିମ୍ପୁଡ଼ିଟି

ବ୍ରୋଷାଜାଳରେ ମରିଯାଇ ନିଶ୍ଚଳ ହୋଇଗଲେ ଝୁଙ୍କେଇ ତାର ପାଟିଲଗାଏ ପିମ୍ପୁଡ଼ିଦେହରେ । ପିମ୍ପୁଡ଼ି ଦେହର ରସତକ ଶୋଷିନେଇ ତାର ମଲାଦେହକୁ ଶିଠିଭଳି କରି ଫୋପାଡ଼ିଦିଏ । ଗୋଟିଏ ପିମ୍ପୁଡ଼ି ଦେହରୁ କେତେ ବା ରସ ମିଳିବ ? କିନ୍ତୁ ସେଇତକଇ ଯଥେଷ୍ଟ ଅହାର ଗୋଟିଏ ଝୁଙ୍କେଇ ପକ୍ଷରେ । ତାର କାରଣ କଅଣ ଜାଣିଛ ? ତାର କରଣ ହେଉଛି ଯେ ଝୁଙ୍କେଇ ଯେତକ ଖାଏ ସେତକକୁ ପୂରା ହଜମ କରିଦିଏ । ଏତରିକ ମଳ ମୂତ୍ର ବି ଟିକିଏ ଜନ୍ମେ ନାହିଁ ଝୁଙ୍କେଇର ପେଟରେ; ତେଣୁ ମଳମୂତ୍ର ପାଇଁ ଦ୍ୱାର ମଧ୍ୟ ନାହିଁ ଝୁଙ୍କେଇର ଦେହରେ । ବଡ଼ ଆଶ୍ଚର୍ଯ୍ୟ ରକମର ପୋକ ଏ ନୁହେଁ ? ଝୁଙ୍କେଇଟି ତେଣୁ ଦେଖିବାକୁ ଗୋଟିଏ ଛୋଟ ବଟୁଆ ବା ଥଳୀ ଭଳି । ଏଇ ବଟୁଆ ମୁହଁକୁ ଖୋଲି ଯାହା ଜିନିଷ ଏଥି ଭିତରକୁ ପକେଇବ ସେ ମିଳେଇଯିବ କୁଆଡ଼େ ବଟୁଆ ଦେହରେ । ସତେକି ସେଇଟି ଗୋଟିଏ କୁହୁକ ବଟୁଆ । ତା ପେଟ ସବୁବେଳେ ଖାଲି ।

ଝୁଙ୍କେଇର ପିମ୍ପୁଡ଼ି ଶିକାର ଦେଖୁ ଦେଖୁ ଆମେ ତାର ବୁଦ୍ଧିକୁ । ମଧ୍ୟ ପରୀକ୍ଷା କରୁ । ଦିନେ କମଳ କହିଲା, "ଭାଇ, ଗୋଟାଏ କଥା କରିବା ।"

"କି କଥା ?" ମୁଁ ପଚାରିଲି ।

"ଆ ଦେଖିବୁ ଆ" କହି କମଳ ପଶିଗଲା ପରୀକ୍ଷାଗାର ଭିତରକୁ । ମୁଁ ତା ପଛେ ପଛେ ଗଲି । କମଳ ଝୁଙ୍କେଇର ଚନ୍ଦଥାଳିଆ ଉପରୁ ଘୋଡଣିଟିକୁ ବାହାର କରିଦେଇ ତା ଉପରେ ନଇଁ ପଡ଼ିଲା । ସେଦିନ ତା ଆହାର ପାଇଁ ପିମ୍ପୁଡ଼ି ନ ଦେଇ କମଳ ଗୋଟିଏ ଛୋଟିଆ ଗୋଡ଼ି ପକେଇଦେଲା ଝୁଙ୍କେଇ ଗାତରେ । ଗୋଡ଼ିଟି ଗଡ଼ିଗଡ଼ି ଯାଇ ଝୁଙ୍କେଇ ଗାତର ସନ୍ଧିତଳେ ପଡ଼ିଲା । କିଛି ସମୟ ଗୋଡ଼ିଟି ସେମିତି ନିଶ୍ଚଳ ହୋଇ ରହିଲା । ତା'ପରେ ଦେଖୁ ଦେଖୁ ଗୋଡ଼ିଟି ହଲଚଲ ହେବାକୁ ଆରମ୍ଭ କଲା । କିଛି ସମୟ ପରେ ଆମେ ଦେଖିଲୁ ଗୋଡ଼ିଟି ଗୋଟିଏ ରାସ୍ତାରେ ଗଡୁଥିବା ରୋଲର୍ ଭଳି ଗାତଭିତରୁ ଗଡ଼ିଗଡି ଉପରକୁ ବାହାରି ଆସିଲା । କମଳ ଆଉଥରେ ପକେଇଦେଲା ସେ ଗୋଡ଼ିଟିକୁ ଝୁଙ୍କେଇ ଗାତ ଭିତରକୁ । ଆଉଥରେ ପୁଣି ଉଠିଆସିଲା ଗୋଡ଼ିଟି ଗାତଭିତରୁ ବାହାରକୁ । ଏମିତି ଯେତେ ଯାହା କଲେ ବି ଝୁଙ୍କେଇର ଗୁହା ମୁହଁକୁ ବନ୍ଦ କଲାଭଳି କୌଣସି ଜିନିଷକୁ ସେ

ରଖେଇ ଦେଇ ନାହିଁ ତା ଗାତ ଭିତରେ । ସବୁକୁ ଆଣି ବାହାରେ ଫୋପାଡ଼ ଦେଇ ସେ ଚାଲିଗଲା ତାର ଲୁଚିବା ଥାନକୁ । ଟୁକେଇର ଏଇ ଗୋଡ଼ଠେଲା ବ୍ୟାପାରଟା ବଡ଼ ମଜା ଦୃଶ୍ୟ ଗୋଟିଏ । କେତେ ବିରକ୍ତ ସେ ହେଉଥାଏ ତା ଗାତରେ ଗୋଡ଼ିଟିଏ ପଡ଼ିଯାଇଚି ଜାଣିପାରିଲେ ! କିନ୍ତୁ ବିରକ୍ତ ହେଲେ କଅଣ ହେବ ?

ଗୋଡ଼ିଟିକୁ ତ ଉଠେଇବାକୁ ହବ ତାକୁ । ତେଣୁ ବଡ଼ ଅନିଚ୍ଛାସତ୍ତ୍ୱେ ଟୁକେଇ ବାହାରିପଡ଼େ ତା ଗାତ ଭିତରୁ । ଏତିକିବେଳେ ଟୁକେଇର ଚାଲିବାକୁ ଲକ୍ଷ୍ୟ କରିବାର କଥା । ଟୁକେଇର ଅଭ୍ୟାସ ଯେ ସେ ଆଗକୁ ନ ଚାଲି ହବାବେଳେ ପଛୁଆ ପଛୁଆ ହେଇ ଚାଲେ । ଟୁକେଇଟି ପଛକରି ତା ଗାତଭିତରୁ ବାହାରି ଆସି ଗୋଡ଼ି ଠେଲିବା କାମରେ ଲାଗିପଡ଼େ । ପେଟର ତେପଟା ଅଂଶଟିକୁ ଗୋଡ଼ି ଦେହରେ ଲଗାଇ ପଛୁଆ ପଛୁଆ ହେଇ ଟୁକେଇ ଠେଲି ନେଇଯାଏ ଗୋଡ଼ିଟାକୁ । ରେଲଇଞ୍ଜିନ୍ ରେଲଡବାଗୁଡ଼ିକୁ ସଣ୍ଟିଂ କଲାଭଳି ଟୁକେଇ ସେ ଗୋଡ଼ିଟିକୁ ଠେଲି ବାହାରେ ଫୋପାଡ଼ ଦିଏ । ତା'ପରେ ପୁଣି ପଛେଇ ପଛେଇ ଗାତ ଭିତରକୁ ଚାଲିଯାଇ ଅଦୃଶ୍ୟ ହୋଇଯାଏ । ବେଳେ ବେଳେ ଟିକିଏ ଚଗଲାମି କରି ଟୁକେଇକି ଚିଡ଼େଇବା ପାଇଁ ଆମେ ଖଣ୍ଡେ ଖଣ୍ଡେ ବଡ ଗୋଡ଼ି ନେଇ ପକେଇଦେଉ ଟୁକେଇ ଗାତରେ । ପ୍ରଥମେ ପ୍ରଥମେ ଟୁକେଇ ତା ବଳ କଷେ ଗୋଡ଼ି ସାଙ୍ଗରେ । ତାର ଭାରି ବଳ । ତା ନିଜ ଓଜନର ଅନେକ ଗୁଣ ଓଜନ ଗୋଡ଼ିକୁ ସେ ଅତି ସହଜରେ ଠେଲି ଦେଇ ଗାତରୁ ଉଠାଇ ଦେଇପାରେ । ମାତ୍ର ଅତି ବଡ଼ ବଡ଼ ଗୋଡ଼ି ଖଣ୍ଡିକୁ ଯେତେବେଳେ ତା'ର ବଳ ପାଏନା, ସେତେବେଳେ ବିରକ୍ତ ହେଇ ସେ ଗାତ ଛାଡ଼ି ଅନ୍ୟ ଗୋଟିଏ ଠାଆକୁ ଯାଇ ସେଠି ଗାତ ଖୋଳି ରହେ । ପୁରୁଣା ଗାତକୁ ଆଉ ଫେରେନାହିଁ ।

ଆହାର ପାଇଁ ଏତେ ପରିଶ୍ରମ ଆଉ ଫନ୍ଦିଫିକର କରି ମଧ୍ୟ ଟୁକେଇର ଜୀବନ ଆହାର ପାଇଁ ନୁହେଁ କି ଆହାର ଉପରେ ନିର୍ଭର କରେ ନା । ଆମେ ଏହାର ପରୀକ୍ଷା ସମ୍ପୂର୍ଣ୍ଣ କରିଛୁ । ବିନା ଆହାରରେ ବହୁଦିନ ବଞ୍ଚିପିବାର କ୍ଷମତା ଅଛି ଏଇ ଛୋଟ ଟୁକେଇଟିର । ଗୋଟାଏ ଗୋଟାଏ ଖରାଛୁଟି, ପୂରା ଏକମାସ ସମୟ ଧରି ଟୁକେଇ ଆମର ଉପାସ ରହିଛି । କମଳ ଚାଲିଯାଇଥାଏ ତାର ଭିଣୋଇଙ୍କ ଘରକୁ । ଆଉ ମୁଁ ଯାଇଥାଏ ମାମୁଁ ଘରକୁ । ସାରା ଖରାଦିନଛୁଟିଟା କଟିଗଲା । ଆମେ ଯାଇ ରହିଲୁ ତେଣେ, ଟୁକେଇ ମୁହଁରେ ଆହାର ଦେଉଚି କିଏ ? ଛୁଟିରୁ ଫେରି ଆମେ ଯେତେବେଳେ ଆମର ପରୀକ୍ଷାଗାର

ଭିତରକୁ ଯାଇ ଝୁଙ୍କେଇର ଚନଥାଳିଆ ଉପରୁ ଘୋଡ଼ଣୀଟି କାଢ଼, ଆମର କାହାର ବିଶ୍ୱାସ ନ ଥିଲା ଯେ ଅମ ଝୁଙ୍କେଇ ଆଉ ଜୀବନରେ ଥିବ ବୋଲି । ତଥାପି କମଳ ଗୋଟିଏ ପିମ୍ପୁଡ଼ି ଧରିଆଣି ଝୁଙ୍କେଇର ଗାତ ଭିତରେ ଛାଡ଼ିଦେଲା । ପିମ୍ପୁଡ଼ି ବାଡ଼େଇପିଟି ହଟାକୁ ଆରମ୍ଭ କଲା । ଆମେ ପିମ୍ପୁଡ଼ିକୁ ଏଇ ମୁହୂର୍ତ୍ତରେ ଲକ୍ଷ୍ୟ କରୁଛୁ, କିନ୍ତୁ ଆର ମୁହୂର୍ତ୍ତରେ ଦେଖିଲା ବେଳକୁ ସେ ଆଉ ସେ ଗାତ ଭିତରେ ନ ଥିଲା ।


( ଝୁଙ୍କେଇ ଯେ ଆମର ଏତେଦିନ ଅନାହାରପରେ ବଞ୍ଚି ରହିଥିଲା— )

ସେ ଯାଇ ଚନତଳେ ଝୁଙ୍କେଇ ମୁହଁର ଆହାର ହୋଇ ସାରିଥିଲା । ଝୁଙ୍କେଇ ଯେ ଆମର ଏତେ ଦିନ ଅନାହାର ପରେ ପ୍ରାଣରେ ବଞ୍ଚି ରହିଥିଲା ଏଥିରେ ଆଉ ସନ୍ଦେହ ନ ଥିଲା । ଏଇଥିରୁ ଆମେ ବେଶ୍ ବୁଝିପାରିଲୁ କିପରି ସାହାରା ମରୁଭୂମିର ବାଲିରେ ଯୋଉ ଝୁଙ୍କେଇମାନେ ବାସ କରନ୍ତି ସେମାନେ କିପରି ବଞ୍ଚନ୍ତି ସେଠି, ସେଇ ଅଧନ୍ତରରେ, ବର୍ଷ ବର୍ଷ ଧରି ।

ଏମିତି ବହୁତ ଦିନ ଏଥିମଧ୍ୟରେ ବିତିଗଲାଣି । ପ୍ରତି ସନ୍ଧ୍ୟାରେ ସ୍କୁଲରୁ ଫେରି ଏଇ ଝୁଙ୍କେଇ ସାଙ୍ଗେ କେତେ ଖେଳିଚୁ ଆମେ । ଏଇ ଅଢ଼େଇ ବର୍ଷ ଭିତରେ କେତେ ଗରୀବ ପିମ୍ପୁଡ଼ି ବିଚରା ନିଜର ଜୀବନ ଦେଇଛନ୍ତି ଆମର ଏଇ ପରୀକ୍ଷା ପାଇଁ । କେତେ କଷ୍ଟ ବି ପାଇଛି ଆମର ଏଇ ଝୁଙ୍କେଇ ଆମରି ଖେଳ ଯୋଗୁ । ସେ ଦିନ କିନ୍ତୁ ସବୁକଥା ବଦଳି ଗଲା ।

ଦିନେ ସ୍କୁଲରୁ ଫେରି ମୁଁ ଆଉ କମଳ ଝୁଙ୍କେଇ ପାଖକୁ ଗଲୁ । ସବୁଦିନ ପରି ଗୋଟିଏ ପିମ୍ପୁଡ଼ି ନେଇ ଆମେ ଝୁଙ୍କେଇ ଗାତରେ ଛାଡ଼ିଦେଲୁ । ପିମ୍ପୁଡ଼ିଟା ପ୍ରଥମେ ଛାଟିପିଟି ହେଲା, କିନ୍ତୁ ଆଶ୍ଚର୍ଯ୍ୟ କଥା ଝୁଙ୍କେଇର ମୁହଁ ଆଉ ଚନଭିତରୁ ବାହାରକୁ ବାହାରିଲା ନାହିଁ । କେତେବେଳେ ଗାତରୁ ଉଠି ପିମ୍ପୁଡ଼ି ପଳାଇଗଲା ।

ଏହାପରେ ଆମର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଝୁଙ୍କେଇଟି ତା’ ହେଲେ ଗଲା କୁଆଡ଼େ ? ଜଳପାତ୍ର ତ ଠିକ୍ ଥିଲା ପୂର୍ବପରି, କିନ୍ତୁ ଝୁଙ୍କେଇ ଗଲା କୁଆଡ଼େ ?

କିନ୍ତୁ ସବୁଦିନ ପରି କମଳ ଏସବୁ ପ୍ରଶ୍ନର ସମାଧାନ କରିଦେଲା । ଚନଥାଳିଆଟିକୁ ପଦାକୁ ଆଣି ସେ ତାକୁ ଖୋଳେଇ ପକେଇଲା । କେତେବେଳକେ ଚନଭିତରୁ ସେ

ଆବିଷ୍କାର କଲା ଗୋଟିଏ ଛୋଟିଆ ଚନମୁଣ୍ଡା । ସେଇ ଚନ-ମୁଣ୍ଡାଟି ଯେମିତି କମଳର ଆଖିରେ ପଡ଼ିଛି ସେ ଏତେ ଖୁସି ହୋଇଗଲା ଯେ ପାଗଳପରି ସେ ଚିତ୍କାର କରି ଉଠିଲା —

"ପାଇଲି ! ପାଇଲି ! ପାଇଲି ! ଭାଇମାନେ ମୁଁ ଆମ ଟୁକେଇକି ! ହେଇ ଦେଖ ! ଏଇ ଚନ ମୁଣ୍ଡା ଭିତରେ ଖୋଷା ବାନ୍ଧି ରହିଛି ଆମ ଟୁକେଇ ! ଆଜି-ଠାରୁ ଆରମ୍ଭ ହୋଇଗଲା ଆମ ଟୁକେଇର ଅଜ୍ଞାତ ବାସ !"

କମଳ ଏତେ ଜୋରରେ ପାଟିକରି ଉଠିଲା ଯେ ତା କଥା ଭଲକରି ବୁଝିବାକୁ ମତେ ଟିକିଏ ଡେରି ଲାଗିଲା । ମୁଁ କମଳ ପାଖକୁ ଯାଇ ତା ହାତ ଉପରେ ରହିଥିବା ଚନମୁଣ୍ଡାଟିକୁ ଆଉଥରେ ପରୀକ୍ଷା [ ଏଇ ଚନ ମୁଣ୍ଡା କଲି । କମଳ ପାଟିକରି ତଥାପି ମତେ ବୁଝେଇବାକୁ ଲାଗିଥାଏ । ଭିତରେ ଖୋସାବାନ୍ଧି ସେ କହୁଥାଏ "ଆରେ ଭାଇ ! ଦେଖୁଚୁ ଆଉ କଅଣ ? ଏଇ ଯେ ଟୁକେଇ ରହିଛି ଆମର ଟୁକେଇ] ଆମର ଖୋଷା ବାନ୍ଧିଛି ! ଏଇଟା ଚନଦାନା ନୁହେଁ, ଟୁକେଇର ଖୋଷା ! ଏଣ୍ଡି ପୋକମାନେ ପ୍ରଜାପତି ହବା ପୂର୍ବରୁ ଯେମିତି ଖୋଷା ବାନ୍ଧନ୍ତି ଆମ ଟୁକେଇ ବି ଖୋଷାବାନ୍ଧିଲାଣି ସେମିତି । ଆଉ ଦି ମାସ ଭାଇ । ଥାଳିଆଟିକି ଯତ୍ନରେ ରଖି ଦେ ଭାଇ !"

ଟୁକେଇ ତାର ଖୋଷା ଭିତରେ ନିଶ୍ଚିନ୍ତ ହୋଇ ରହିଲା । ଆଉ ଚନ ଭିତରେ ଟୁକେଇର ଗାତ ଦେଖାଗଲା ନାହିଁ । କିମ୍ବା ଟୁକେଇର ପରୀକ୍ଷା ପାଇଁ ଆଉ ଆମର ବନ୍ଧୁ ପିମ୍ପୁଡ଼ିମାନଙ୍କୁ ନିଜ ଜୀବନକୁ ବଳୀ ଦେବାକୁ ପଡ଼ିଲା ନାହିଁ ।

ପ୍ରାୟ ପ୍ରତି ସକାଳ ଆଉ ସନ୍ଧ୍ୟାରେ ଆମେ ଆସି ଦେଖିଯାଉ ଆମର ଟୁକେଇକି ସେ କିନ୍ତୁ ସମାଧିରେ ବସିଥାଏ । କେବେ ତାର ତପସ୍ୟା ଭଙ୍ଗ ହେବ ସେ ଅପେକ୍ଷାରେ ଆମେ ରହିଲୁ ।

ସେଦିନ ବଡ଼ିସକାଳୁ କମଳ ଆସି ହାଜର ହେଲା । ଗତ ସପ୍ତାହ ଗୋଟାକ ଟୁକେଇ ପାଖେ ଅଧିଆ ଦେଇ ପଡ଼ିଥାଉ ଆମେ । କେତେବେଳେ ମହାତ୍ମା ଟୁକେଇ କି ରୂପରେ ବାହାରିବେ କେଜାଣି ? କାଳେ କେଉଁ ରୂପରେ ଟୁକେଇ ଆମର ଚନଥାଳିଆରୁ ଉଡ଼ି ବାହାରିଯିବେ, ସେଥିପାଇଁ ଆମେ ଗୋଟିଏ ପ୍ରଜାପତି ଧରା ଜାଲ ତଳେ ଚନଥାଳିଆ-

ଟିକୁ ଘୋଡ଼ାଇ ରଖିଥାଉ । ସେଦିନ ସକାଳେ ଆମେ ସବୁ ଜଗି ବସିଛୁ । ହଠାତ୍ ଆରମ୍ଭ ହେଲା ମହାତ୍ମା ଝୁକେଇଙ୍କର ଜୀବନର ଶେଷ ପର୍ବ ।

ଝୁକେଇର ଧ୍ୟାନ ଭାଙ୍ଗିଲା । ଦୁଇମାସ ତଳେ ବାନ୍ଧିଥିବା ଚନର ଖୋଷାଟା ହଠାତ୍ ହଲଚଲ ହେବାକୁ ଆରମ୍ଭ ହେଲା । ଦେଖୁ ଦେଖୁ କଅଣ ଗୋଟିଏ କଳା ଜିନିଷ ଧୀରେ ଧୀରେ ଚନଭିତରୁ ବାହାରିବାକୁ ଚେଷ୍ଟା କଲା ।

କମଳ ଆଉ ମୁଁ ଆଣ୍ଠୁମାଡ଼ି ଚନଥାଳୀଆଟିକୁ ଏକଲୟରେ ଚାହିଁ ବସିଥାଉ । ଝୁକେଇର ଶରୀର ପରିବର୍ତ୍ତନ ହେଇ ଯାଉଥାଏ ଆମରି ଆଖି ଆଗରେ ।

ଚନ ଭିତରର ସେଇ କଳା ଜିନିଷଟି ବାହାରକୁ ବାହାରି ଆସିଲା । ଚହ୍ନିହେଉ-ନ ଥାଏ ସେହି ଜିନିଷଟିକୁ ପ୍ରଥମେ । କଅଣ ଟାଏ ? —କମଳ ମତେ ପଚାରିଲା । ମୁଁ ଚୁପ୍ ହେଇ ବସିଲି ।



[ ଖୁବ୍ ସୁନ୍ଦର କଙ୍କିଟିଏ ହୋଇ ସେ ମହାତ୍ମା ଉଡ଼ି ବୁଲୁଥିଲେ ]

ବାହାରର ପବନ ଆଉ ଆଲୁଅରେ ଅଳ୍ପ ସମୟ ବସିପିବା ମାତ୍ରେଇ ମହାତ୍ମା ଝୁକେଇ ଊର୍ଦ୍ଧ୍ୱକୁ ଉଠିବାକୁ ଲାଗିଲେ । ସେତେବେଳେ ଆଉ ନ ଥିଲା ତାଙ୍କର ପୂର୍ବ ରୂପ,

ନ ଥିଲା ତାଙ୍କର ସେଇ ଦାଢ଼ୁଆ ଦାଆ ଭଳି ଥୋଡ଼ କିମ୍ବା ଓଡ଼ଶ ଭଳି ବେହେଲା । ଖୁବ୍ ସୁନ୍ଦର କଙ୍କିଟିଏ ହୋଇ ସେ ଆମ ପ୍ରଜାପତି ଧରା ଜାଲ ଭିତରେ ଉଡ଼ିବୁଲୁଥିଲେ ।

ମହାତ୍ମା ଟୁକେଇଙ୍କୁ ଆଉ ଅଧିକ କଷ୍ଟ ନ ଦେବାପାଇଁ କମଳ ତାଙ୍କୁ ମୁକ୍ତ କରିଦେଲା । ପ୍ରଜାପତି ଧରା ଜାଲ ଭିତରୁ ମୁକ୍ତପାଇ କଙ୍କିଟି ଆମ ଗବେଷଣାଗାର ଭିତରେ ଉଡ଼ିବୁଲିଲା । ଟିକିଏ ସମୟ ଉଡ଼ିଲା ପରେ ହଠାତ୍ କଅଣ ଭାବି ଆମର ଛୋଟ ଅମୁହାଁ ଗବେଷଣାଗାରଟିକୁ ଛାଡ଼ି ସେ ବାହାରକୁ ଉଡ଼ି ଚାଲିଗଲା ।

ଦୀର୍ଘ ନିଃଶ୍ୱାସ ପକେଇ କମଳ କହିଲା—

"ଭାଇରେ ! କାହିଁ ଆମ ଟୁକେଇ ? ସେ ଗଲାକୁଆଡ଼େ ? ଗୋଟିଏ ଗୋଟିଏ କ୍ଷୁଦ୍ର ପତଙ୍ଗ ପୁଣି ଏତେ କନ୍ଦାଇ ପାରନ୍ତି ଆମକୁ ?"

କମଳ କାନ୍ଦୁଥିଲା । ଗବେଷଣାଗାରର ଛୋଟ ଟେବୁଲ ଉପରେ ଥୁଆହେଲା ଖାଲି ଚକଥାଳୀଆଟି । ସେଥିରେ କିନ୍ତୁ ଟୁକେଇ ଆମର ନ ଥିଲା । ବର୍ଷବର୍ଷର ସ୍ନେହ-ଡୋରକୁ କାଟିଦେଇ ତାର ଜୀବନ ଗୋଟିଏ କଙ୍କିବେଶରେ ଆମଠୁଁ ଦୂରକୁ ଉଡ଼ି ଚାଲିଗଲା ।

ବାହାରକୁ ଆସି ମୁଁ ଖୋଲାଆକାଶକୁ ଅନେକ ବେଳ ଧରି ଅନେଇ ରହିଲି । କଙ୍କିଟି କିନ୍ତୁ ଆଉ ମୋ ଆଖିରେ ପଡ଼ିଲା ନାହିଁ । ହୁଏତ ସେଇ ଗୋଟାଏ ଘଣ୍ଟା ଭିତରେ କେଉଁଠି କିଛି ଅଣ୍ଡା ଦେଇ ସେ କଙ୍କିଟି ମରିଯିବଣି ।

ସେ କଙ୍କିଟି ମରିଯାଇଥିବ ନିଶ୍ଚୟ । ସବୁ କଙ୍କି ଆଉ ଆଉ ସବୁ ପ୍ରଜାପତିମାନେ ତ ଅଣ୍ଡା ଦେଇ ମରିଯାଆନ୍ତି; କିନ୍ତୁ ସିଏ ମରୁ ବା ନ ମରୁ ଆମ ନଣ୍ଡପଠା ଘରପାଖେ ଏବେ ବି ଟୁକେଇ ଗାଛ ସବୁ ଦେଖାଯାଏ । ଏବେ ମଧ୍ୟ ଆମେ ସକାଳେ ସନ୍ଧ୍ୟାରେ ସେଇଠି ଖେଳୁଛୁ ।

---

# ମହୁମାଛିଙ୍କ ନାଚ

ମୋ ଡାଏରି ପଢ଼ି ବାପା କଅଣ କହିଲେ—

[ ମହୁମାଛିର ଗୁଣୁଗୁଣୁ ଗୀତ ଆମେ ସମସ୍ତେ ଶୁଣିଛୁ; କିନ୍ତୁ କିଏ ଜାଣିଥିଲା ଯେ ମହୁମାଛି ମଧ୍ୟ ନାଚି ପାରେ ଓ ସେ ନାଚଟା କେବଳ ମନଖୁସିର ନାଚ ନୁହେଁ, ବରଂ ସେଇ ନାଚଟା ମହୁମାଛିର ଗୋଟାଏ ଭାଷା କହିଲେ ଚଳେ । ମହୁହାଟକୁ ବାଟ ଦେଖି ସେ ଫେଣାର ଅନ୍ୟାନ୍ୟ କର୍ମୀମାନଙ୍କୁ ଖବର ଦେଇପାରେ । କାଲି ଠାର କାଲି ମାଆ ବୁଝିଲା ଭଳି ମହୁମାଛିର ଏ ଛନ୍ଦନାଚର ଅର୍ଥ ମହୁମାଛି ହିଁ ବୁଝେ । କିନ୍ତୁ ମହୁମାଛିର ଏ ଠାର ପ୍ରଥମେ ବୁଝିପାରିଲେ ଅଷ୍ଟ୍ରିଆର ଜଣେ ପ୍ରଫେସର—କାର୍ଲଭନ୍‌ଫ୍ରିସ୍ । ସେ ସାରା ଜଗତକୁ ତା ପରେ ବୁଝେଇ ଦେଇଛନ୍ତି, କୀଟପତଙ୍ଗମାନେ ବି ଠାରଠୁର ହେଇ କିପରି ନିଜ-ନିଜର ମନୋଭାବ ପରସ୍ପରଠାରେ ପ୍ରକାଶ କରିପାରନ୍ତି । ଏଇ କଥାଟି ଆଜି ସମଗ୍ର ପ୍ରାକୃତିକ ବିଜ୍ଞାନ-ଜଗତରେ ଚହଲ ପକେଇ ଦେଇଛି ]



[ ମୂହୂର୍ତ୍ତକ ପୂର୍ବରୁ ଯେଉଁଠି ଧଳା କନାର ପରଦାଟା ଝୁଲୁଥିଲା
ସେଠି ଆସି ଉଭାହେଲା ଗୋଟିଏ ଦିବ୍ୟ ସୁନ୍ଦର ପଶ୍ୱଶ୍ୱଇଜର ବଗିଚା ]

ସନ୍ଧ୍ୟା ଛଅ ବାଜିଲା । ସ୍କୁଲଘରର କବାଟ ଝରକା ସବୁ ବନ୍ଦ । ଭିତରେ ଆମେ ବସିଛୁ ପ୍ରାୟ ପାଞ୍ଚଶହ ପିଲା । ସମସ୍ତଙ୍କ ମୁହଁରେ ଆଗ୍ରହ । କେତେବେଳେ ଚଳଚ୍ଚିତ୍ର ଆରମ୍ଭ

ହେବ ! ଆମେ ସବୁ ଚାହିଁ ବସିଥାଉ । ହଠାତ୍ ଘର ଭିତରଟା ଏକବାରେ ଅନ୍ଧାର ହୋଇଗଲା । ସାଙ୍ଗେ ସାଙ୍ଗେ ଗର୍ଜି ଉଠିଲା ଗୋଟାଏ ଯନ୍ତ୍ର । ଆଖି ମଳମଳ ଆମେ ଚାହିଁଲୁ ପରଦାକୁ । ଆମେ ଅନୁଭବ କଲୁ ସତେ ଯେପରି ଆମ ଚାରିପାଖର ସବୁ କିଛି ହଠାତ୍ କେମିତି ବଦଳିଗଲା । ମୁହୂର୍ତ୍ତକ ପୂର୍ବରୁ ଯେଉଁଠି ଧଳାକନାର ପରଦାଟା ଝୁଲୁଥିଲା, ସେଠି ଆସି ଉଭା ହେଲା ଗୋଟିଏ ଦିବ୍ୟସୁନ୍ଦର ପରୀରାଇଜର ବଗିଚା ।

ପରୀରାଇଜର ବଗିଚା ! ଆହା କେଡ଼େ ସୁନ୍ଦର ! ନାନାଜାତିର ନାନାରଙ୍ଗର ଫୁଲ ଫଳରେ ହସିଉଠୁଥାଏ ସେଇ ବଗିଚାଟି । ବଗିଚାର ଧାରେ ଧାରେ କୁଳୁ କୁଳୁ ହୋଇ ବୋହି ଯାଉଥାଏ ସରୁଆ ଆଉ ସୁନ୍ଦର ଝରଣାଟିଏ । ବୋଧହୁଏ ସେଇ ବଗିଚାଟି ଥିଲା, ସ୍ୱର୍ଗର ନନ୍ଦନ-କାନନ, ଆଉ ସେଇ ଝରଣାଟି ମଧ୍ୟ ଥିଲା, ସ୍ୱର୍ଗର ମନ୍ଦାକିନୀ ! ନାଲି ଟହଟହ କଳା ମଚ୍‌ମଚ୍ ଫଳଗୁଡ଼ିକ ଦେଖି ପାଟିରୁ ଲାଳ ବୋହି ଆସିଲା ମୋର । ଗୋଛା ଗୋଛା ଗୋଲାପଫୁଲ ଝୁଲି ଝୁଲି ନାଚୁଥାଆନ୍ତି ପବନରେ; କିନ୍ତୁ ଏସବୁ-ସତ୍ତ୍ୱେ କଅଣ ଗୋଟାଏ ସତେକି ହଜିଯାଇଥାଏ ସେଇ ବଗିଚାରେ, ସେମିତି ଲାଗୁଥାଏ । ସେଇ ଜିନିଷଟା ନ ଥିବାରୁ ବଗିଚାର ଶିରୀ ସତେକି ତୁଟିଯାଉଥାଏ; ତେବେ ଜିନିଷଟି କଅଣ ? କଅଣଟିଏ ହଜି ଯାଇଚି ? ମୁଁ ବହୁତ ଖୋଜାଖୋଜି କଲି; କିନ୍ତୁ ବୁଝିପାରିଲି ନାହିଁ, ପ୍ରକୃତରେ କଅଣ ନ ଥିଲା ସେଇ ସୁନ୍ଦର ବଗିଚାଟିରେ । ହଠାତ୍ ଜଣାପଡ଼ିଗଲା ଜିନିଷଟି । ମୁଁ ଆଶ୍ଚର୍ଯ୍ୟ ହେଲି—ଏଡେବଡ଼ ବଗିଚାଟା ଏମିତି ଶୂନ୍‌ଶାନ୍ କାହିଁକି ? ଜନପ୍ରାଣୀର ସ୍ୱର ତ ଏଠି ନାହିଁ, ଏମିତିକି ଗୋଟାଏ ମହୁମାଛିର ଗୁଣୁଗୁଣୁ ଶବ୍ଦ ବି ଏଠି ଶୁଭୁନାହିଁ; ଅଥଚ ଏଡ଼େବଡ଼ ମହୁହାଟଟାଏ ଝୁଲୁଛି ବସିଛି ଏଠି ? କଥା କଅଣ ? କଅଣ ହୋଇଛି ? ଏଡେବଡ ମହୁହାଟକୁ ବାଟ କଅଣ ସତେ ପାଇପାରି ନାହାନ୍ତି ସେଇ ମହୁଲୋଭୀ ମହୁମାଛିଗୁଡ଼ାକ ?

ମୁଁ ଏମିତି ଭାବୁଥାଏ—ଠିକ୍ ଏତିକିବେଳେ ଶୁଭିଲା ଗୋଟାଏ ଗୁଣୁଗୁଣୁ ଶବ୍ଦ କୋଉଠି କେମିତିକା । ଦେଖୁ ଦେଖୁ ଫୁଲବଣ ଭିତରୁ ବାହାରି ପଡ଼ିଲା ଗୋଟାଏ ମହୁମାଛି ମାନେ ଗୋଟିଏ ମହୁମାଛି ! ପରାଗ ରେଣୁ ମାଖିହୋଇ ଦେହଟା ତାର ହଳଦି ଗରଗର ହୋଇଥାଏ । ମହୁମାଛିଟି ଥିଲା ଥିଲା, ଗୋଡ଼ ଦି'ଟାରେ ତାର ମୁହଁକୁ ଟିକିଏ ଝାଡ଼ିଝୁଡ଼ି ଦେଲା । ତାପରେ କୁନିକୁନି ଡେଣା ଦିଇଟିକି ତାର ସେ ମେଲେଇ ଦେଲା । ଚାହୁଁ ଚାହୁଁ ଆକାଶର ନେଳୀଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲା ସେ ।

ମହୁମାଛି ଉଡ଼ିଗଲା । ଆମେ ଆଖି ମଳି ମଳି ଖୋଜିଲୁ ତାକୁ ଅନେକ । କିନ୍ତୁ ଏଡ଼େ ଟିକେ ମହୁମାଛିର ପତ୍ତା ଏଡ଼େବଡ଼ ନେଳୀ ଆକାଶଟା ଭିତରେ ବା ମିଳନ୍ତା କୁଆଡ଼ୁ ? ତା' ପରେ ମହୁମାଛିକୁ ମନରୁ ପାସୋରି ଆମେ ଆଖି ଫେରେଇଲୁ ବଗିଚା ଆଡ଼କୁ । ବଗିଚାର ଗୋଛା ଗୋଛା ଫୁଲ ଯେମିତି ଝୁଲୁଥାଆନ୍ତି ପବନରେ । କିନ୍ତୁ ସେ ଭିତରେ ଆଉ ଜୀବନ ନ ଥାଏ ଯେମିତି, ସତେକି ତାଙ୍କ ସାଙ୍ଗ ସେଇ ମହୁମାଛିଟିକୁ ହରାଇ ଫୁଲଗୁଡ଼ିକ କେମିତି ନଇଁଶିଆ ହୋଇ ଖାଲି ମୁଣ୍ଡ ଟୁଙ୍ଗାରୁଥାଆନ୍ତି ।

ଠିକ୍ ଏତିକିବେଳେ ଶଙ୍ଖ ଫୁଙ୍କିଲା ଭଳି କଅଣ ଗୋଟାଏ ଶବ୍ଦ ହେଲା । କଅଣଟାଏ ? ଆମେ ଚତୁର୍ଦ୍ଦିଗକୁ ନଘା କଲୁ । କାହିଁ ? କଏ ? ଚାହୁଁ ଚାହୁଁ ବଗିଚା ଭିତରୁ ବାହାରି ଆସିଲା ଗୋଟିଏ ଚକଚକିଆ ନାଲି ମଟରଗାଡ଼ି । ତୀର ବେଗରେ ଛୁଟିବାକୁ ସେ ଆରମ୍ଭ କଲା । ତାର ଗତି ଦେଖି ମନେ ହେଉଥିଲା ସତେ ଯେମିତି ସେ ମହୁମାଛିର



[ ସାଙ୍ଗେ ସାଙ୍ଗେ ଭଦ୍ରଲୋକ ଜଣକ ତାଙ୍କ ପକେଟରୁ ବାହାର କରି ଆଣିଲେ
ଦୂରବୀଣ୍ ଭଳି କିଛି ଗୋଟାଏ ଯନ୍ତ୍ର । ଯନ୍ତ୍ରଟିକୁ ଆଖିରେ ଦେଇ ]

ପିଛା ଧରି ଚାଲିଥିଲା ସେ ମଟର ଗାଡ଼ିଟା । ଏକ୍, ଦୁଇ, ତିନ୍—କରି ମାଇଲ ଖୁଣ୍ଟଗୁଡ଼ାକ ଗୋଟିକ ପରେ ଗୋଟିଏ ଚାଲି ଯାଉଥାଆନ୍ତି ମଟର ପଛକୁ । ପ୍ରାୟ ପାଞ୍ଚ ମାଇଲ ଗଲା ପରେ ଗାଡ଼ିଟା ଧଡ଼୍ କରି ଅଟକି ଗଲା । ସାଙ୍ଗେ ସାଙ୍ଗେ ମଟର ଭିତରୁ ବାହାରି ପଡ଼ିଲେ ଦୁଇଟି

ଲୋକ । ତାଙ୍କ ଭିତରୁ ଜଣେ ଥିଲେ ଯୁବକ ଆଉ ଅନ୍ୟଟି ଥିଲା ଆମରି ପରି ପିଲାଟିଏ । କଥାନାହିଁ, ବାର୍ତ୍ତାନାହିଁ ଦୁହେଁ ଓହ୍ଲାଇ ଆସିଲେ ସଡ଼କରୁ ତଳକୁ । ସତେ ଯେମିତି ଆଗରୁ ସବୁକଥା ଠିକ୍‌ଠାକ୍ କରି ଏମାନେ କୁଆଡ଼କୁ ଯାଉଥିଲେ । କିଛି ସମୟ ପରେ ସେ ଦୁହେଁ ଆସି ପହଞ୍ଚିଲେ ଗୋଟାଏ ପାହାଡ଼ିଆ ନିର୍ଜ୍ଜନ ଜାଗାରେ । ଯୁବକଟି ତାଙ୍କ କୋଟ୍ ପକେଟ୍‌ରେ ହାତ ମାରିଲେ । ଏହି ସମୟରେ ଆଉ ପିଲାଟି ତାଙ୍କୁ କଅଣ ଠାରି ଦେଲା । ସାଙ୍ଗେ ସାଙ୍ଗେ ଭଦ୍ରଲୋକ ଜଣକ ତାଙ୍କ ପକେଟ୍‌ରୁ ବାହାରକରି ଆଣିଲେ ଗୋଟାଏ ଦୂରବୀଣ୍ ଭଳି କିଛି ଗୋଟାଏ ଯନ୍ତ୍ର । ଯନ୍ତ୍ରଟିକୁ ଆଖିରେ ଦେଇ ସେ ଏଣିକି ତେଣିକି ଲକ୍ଷ୍ୟ କଲେ । ତା ପରେ ସେ କଅଣ ଦେଖିଲେ କେଜାଣି ପିଲାଟିକୁ ଠାରି ଦେଇ ସେ ହଠାତ୍ ଦଉଡ଼ିବାକୁ ଆରମ୍ଭ କଲେ । ଆଗିଲା ପିଛିଲା ହୋଇ ଦୁହେଁ କିଛି ବାଟ ଧାଇଁ ଗଲେ ।

ସେମାନେ ଗୋଟାଏ ପାହାଡ଼ିଆ ଗୁହା ଆଡ଼କୁ ମୁହେଁଇ ଥିଲେ । ଏତିକି ବେଳେ ଶୁଭିଲା ଗୋଟାଏ ଅଦ୍ଭୁତ ଶବ୍ଦ । ସତେ ଯେପରି ଗୋଟାଏ ଦେବ ମନ୍ଦିର ମଧ୍ୟରୁ ବାହାରି-



[ ଏଡ଼େବଡ଼ ମହୁଫେଣାଟାଏ ]

ଥିଲା ସେ ଶବ୍ଦଟା । କେହି ଯେପରି ବଡ଼ପାଟି କରି କୌଣସି ମନ୍ତ୍ର ପଢୁଥିଲା ସେ ମନ୍ଦିରରେ । ଆମେ ଚତୁର୍ଦ୍ଦିଗ ଅନୁସନ୍ଧାନ କଲୁ । ଏହି ସମୟରେ ପାହାଡ଼ କନ୍ଦିରେ ଗୋଟିଏ ଗୁହା

ଆମକୁ ଦେଖାଗଲା । ଗୁହାଭିତରକୁ ଯେମିତି ଆମ ଆଖି ପଡ଼ଯାଇଛି, ଆମେ ସମସ୍ତେ ଏକସାଙ୍ଗେ ଚମକି ପଡ଼ିଲୁ । ବାପ୍‌ରେ ବାପ୍ ! ଏଇଟା କି ଜନ୍ତୁରେ ବାବା ? ହାତୀ ? ଭାଲୁ ? ନା, ବାଘ ବୋଧହୁଏ । କିନ୍ତୁ ଯାହାହେଉ ଭଲକରି କିଛି ସମୟ ସେ ଜିନିଷଟାକୁ ଦେଖିଲା ପରେ ଆମେ ଆମ ଭୁଲ୍ ଧରି ପାରିଲୁ । ଜିନିଷଟା ହାତୀ ନୁହେଁ, ପ୍ରକୃତରେ ହାତୀପେଟ ପରି ଏଡ଼େ ବଡ଼ ମହୁଫେଣାଟାଏ । ସେଇ ଅନ୍ଧାରିଆ ଗୁହା ଭିତରେ ସେଇଟା ଗୋଟାଏ ଅଦ୍ଭୁତ ଜନ୍ତୁ ପରି ଦେଖା ଯାଉଥିଲା ।

ତା ପରେ ଆମେ ମହୁମାଛି ଓ ମହୁଫେଣା ଆଡ଼କୁ ମନ ଦେଲୁ । ଆମେ ଆଶ୍ଚର୍ଯ୍ୟ ହେଲୁ ଏ ଅପନ୍ତରା ଜାଗାରେ ମହୁଫେଣାଟାଏ ହେଲା କେମିତି ? କଅଣ ଭାବି ମହୁମାଛି-ମାନେ ଏକ ପର୍ବତିଆ ଟାଙ୍ଗରା ଜାଗାରେ ଘର ତିଆରି କଲେ ? କାହିଁ ? ଏ ଖଣ୍ଡମଣ୍ଡଳରେ ତ ଫୁଲ କି ଫଳର ନାଆଁ ଗନ୍ଧ ଆମେ ଦେଖିପାରୁ ନାହୁଁ !

ଠିକ୍ ଏତିକିବେଳେ ଗୁଣୁ ଗୁଣୁ ହେଇ ଗୁହାଭିତରକୁ ପଶି ଆସିଲା ଗୋଟାଏ ହଳଦିଆ ଗରଗର ମହୁମାଛି । ସାଙ୍ଗେ ସାଙ୍ଗେ ଯନ୍ତ୍ରଟିକୁ ଆଖିରେ ଦେଇ ଧ୍ରୁବକଟି ଲକ୍ଷ୍ୟ-କଲେ ଗୁହା ଭିତରକୁ । ତା ପରେ ସେଇ ଝାପ୍‌ସା ଝାପ୍‌ସା ଆଲୁଅ, ଅନ୍ଧାର ଭିତରେ ଆମେ ଯାହା ଦେଖିଲୁ ସେଥିରେ ଆଚମ୍ବିତ ନ ହୋଇ ଆମେ ରହି ପାରିଲୁ ନାହିଁ ।

କିଏ ଶୁଣିଥିଲା ଯେ ମହୁମାଛିମାନେ ନାଚନ୍ତି ? କେବଳ ମନଇଚ୍ଛା ନାଚ ତ ନୁହେଁ, ଗୋଟିଏ ରୀତିମତ ଶବର ନାଚ ସେଇଟା !

ସେ ନାଚ ଆରମ୍ଭ ହେଲା ପ୍ରଥମେ ଏହିପରି । ପ୍ରଥମେ ଆମର ସେଇ ପରିଚରେଣୁ ମଖାମଖି ହେଇ ଆସିଥିବା ମହୁମାଛିଟି ମହୁଫେଣାର ଟିକିଏ ଅନ୍ଧାରିଆ ଜାଗାକୁ ଗଲେ । ତାପରେ ସେଇଠି ବସିପଡ଼ି ସେ ପ୍ରଥମେ ତା ପେଟଟିକୁ ଦୋହଲାଇବାକୁ ଲାଗିଲା । ସତେକି ସେ ତାର ନାଚ ଆରମ୍ଭ କରିବା ପୂର୍ବରୁ ତାଳ ଲୟ ଠିକ୍ କରି ନେଉଥିଲା । ପରଦା ଉପରେ ବର୍ତ୍ତମାନ ମହୁମାଛିଟାର ଛବି ପୂରାପୂରି ଆମେ ଦେଖିପାରିଲୁ । ଭାରି ସୁନ୍ଦର ମହୁମାଛିଟିଏ ସେ । ନାଚ ନାଚିବା ପାଇଁ ଭାରି ଅଥୟ ହେଇପଡୁଥିଲା ଭଳି ଜଣାପଡୁଥାଏ ସେ ! ତାର ହାତ ଗୋଡ଼ ଅଣ୍ଟା ଆଖି ସବୁ ଯେମିତି ଏକବାରେ ତିଆରି ହେଇଥାଆନ୍ତି, ଖାଲି ତାଳକୁ ଅପେକ୍ଷା କରି ।

ହଠାତ୍ ସବୁ କିଛି ଠିକ୍ ହୋଇଗଲା । ଧୀରେ ଧୀରେ ନାଚ ଆରମ୍ଭ କଲା ଆମର ସେଇ ଗୋଟିପୁଅ ମହୁମାଛିଟି । ପ୍ରଥମେ ସେ ତାର ଅଣ୍ଟାକୁ ଭାଙ୍ଗି ଭାଙ୍ଗି ଠିକ୍ ତାଳରେ ଗୋଟାଏ ଘେରି ବୁଲିଆସିଲା । ସେ ଯେଉଁ ଘେରଟା ବୁଲିଲା, ତାର ଗୋଟାଏ ଚିତ୍ର ଯଦି କାଗଜ ଉପରେ କରିଯାଏ ତାହେଲେ ସେଇଟି ଗୋଟି "୪" ଚିହ୍ନ ବା ଗାଣ୍ଠିଛନ୍ଦ ପରି ଦେଖାଯିବ । ପ୍ରଥମେ ମହୁମାଛିଟି ଆସ୍ତେ ଆସ୍ତେ ସେଇ ଛନ୍ଦ ଚିହ୍ନ ଅନୁସାରେ ମହୁ-ଫେଣାର ଉପରୁ ତଳକୁ ଆଉ ତଳୁ ଉପରକୁ ହୋଇ ନାଚବାକୁ ଲାଗିଲା । ହଠାତ୍ ସେ ନାଚର ଗତି ବଢ଼ି ଉଠିଲା । ଆହୁରି ଜୋରରେ ଅଣ୍ଟା ତାର ଝୁଲିବାକୁ ଆରମ୍ଭ କଲା । ଆହୁରି ଶୀଘ୍ର ଶୀଘ୍ର; କିନ୍ତୁ ଠିକ୍ ତାଳରେ ପଡ଼ିଲା ଉଠିଲା ତାର ଗୋଡ଼ ସେଇ ଛନ୍ଦରେ । ତା ପରେ ମାତି ଉଠିଲା ସେଇ ନର୍ତ୍ତକୀ ମହୁମାଛିଟା । ତାକୁ ଦେଖିଲେ ମନେ ହେଉଥିଲା ସତେକି ସ୍ୱର୍ଗର ଗୋଟିଏ ଅପ୍‌ସରୀ ମତୁଆଲୀ ହୋଇ ନାଚ ନାଚ କାହାକୁ କଅଣ କେତେ କଥା କହି ଯାଉଥିଲା । ତାପରେ ଆମ ଆଖି ଆଗରୁ ଦୂରେଇଗଲା ସେ ମହୁମାଛିର ଚିତ୍ରଟା । ପରଦା ଉପରେ ବର୍ତ୍ତମାନ ସେଇ ମସ୍ତବଡ଼ ମହୁଫେଣା ଓ ଫେଣାର ସଳର ବଳର ହେଉଥିବା ମାଛିଗୁଡ଼ିକ ଆସିଲେ ଆମର ଆଖି ଆଗକୁ ।

ବର୍ତ୍ତମାନ ପରିଷ୍କାର ହୋଇ ଦେଖାଯାଉଥିଲେ ମାଛିଗୁଡ଼ିକ । ପ୍ରଥମଥର ପାଇଁ ଏତେ ଗୁଡ଼ାଏ ମହୁମାଛିଙ୍କୁ ଏତେ ପାଖରୁ ଦେଖିବାର ସୁଯୋଗ ପାଇଲୁ ଆମେ ସେ ଚିତ୍ରରେ । ଆଖି ମଳି ମଳି ଆମେ ଚାହିଁଲୁ ।

କିନ୍ତୁ ଏ କଅଣ ରେ ବାବା ? ଫେଣାର ଏତେଗୁଡ଼ାଏ ମହୁମାଛି ଯେ ଆରମ୍ଭ କରିଦେଲେଣି ଏଥର ତାଙ୍କର ଲୋକନୃତ୍ୟ ! କି ମନ୍ତ୍ର ସେ ଅପ୍‌ସରୀ ମହୁମାଛିଟା କରିଦେଲା କେଜାଣି, ବର୍ତ୍ତମାନ ସମସ୍ତେ ଆରମ୍ଭ କରିଦେଲେଣି ନାଚ । ସମସ୍ତେ ସତେକି ଏକସାଙ୍ଗେ ହୋଇଗଲେ ମତୁଆଲା । ବାହାକୁ ବାହା ମିଶାଇ ଅଣ୍ଟା ଦୋହଲାଇ ଦୋହଲାଇ ପ୍ରତ୍ୟେକ ବର୍ତ୍ତମାନ ମାତିଉଠିଛନ୍ତି ନାଚ କରିବାରେ । କିନ୍ତୁ ଯେତେ ମତୁଆଲା ହେଲେ ମଧ୍ୟ କେହି ଗୋଟିଏ ହେଲେ ତାଳ ହୁଡ଼ୁ ନାହାନ୍ତି କି ଛନ୍ଦ ଭାଙ୍ଗୁ ନାହାନ୍ତି । ପ୍ରତ୍ୟେକ ନାଚୁଛନ୍ତି ସେଇ ଗୋଟିଏ ଛନ୍ଦରେ—୪ ଭଳି ।

କ୍ରମେ ଆହୁରି ବେଶି ବେଶି ମହୁମାଛି ଯୋଗଦେଲେ ସେଇ ନାଚଦଳ ସାଙ୍ଗରେ । ଅଳ୍ପସମୟ ଭିତରେ ପ୍ରାୟ ସାରଫେଣାର ସମସ୍ତ ପରିଶ୍ରମୀ ମହୁମାଛିମାନେ ଯୋଗ ଦେଇଥିଲେ ବୋଧହୁଏ ସେଇ ବିରାଟ ଆଖଡ଼ାରେ ।

ଆମେ ସମସ୍ତେ ତାଟକା ହେଇ ରହିଁ ରହିଥିଲୁ । କିଏ କାହା ସାଙ୍ଗରେ କଥାବାର୍ତ୍ତା କରିବାକୁ ବେଳ ପାଇ ନଥିଲୁ । କେତେବେଳକେ ମୋ ମୁଣ୍ଡରେ ପଶିଲା ଗୋଟାଏ କଥା । ମୁଁ ନିଜକୁ ନିଜେ ପଚାରିଲି — ଏ କଅଣ ମହୁମାଛିର ନାଚ ? କିମ୍ବା ଏ ଗୋଟାଏ ମସ୍ତବଡ଼ ଠାରବିଦ୍ୟା ? ଠାରିଠାରି ହେଇ ଏମାନେ କି କଥାବାର୍ତ୍ତା ହେଇ ନାଚୁଛନ୍ତି ?

ଠିକ୍ ଏତିକିବେଳେ ମୋ ମନକଥାର ଉତ୍ତର ଦେଲା ଭଳି ଘଟଣାଟାଏ ଘଟିଲା ସେଠି । ନାଚ ନାଚ ପ୍ରାୟ ବେହୋସ ହେଇଯିବା ବେଳକୁ କି ଜ୍ଞାନ ସେମାନେ ପାଇଲେ ସେଇ ନାଚରୁ କେଜାଣି ଦଳ ଦଳ ହୋଇ ଭଣ୍ ଭଣ୍ ହୋଇ ସେମାନେ ହଠାତ୍ ମହୁଫେଣାକୁ ପରିତ୍ୟାଗ କରି ଉଡ଼ିଗଲେ ବାହାରକୁ । ତାପରେ, କାହାର ଇସାରା ପାଇଲା ଭଳି, ସେମାନେ ଏକମୁହାଁ ହେଇ ଏକାଦିଗରେ ଉଡ଼ି ଚାଲିଗଲେ ନୀଳ ଆକାଶ ଭିତରକୁ ।

ଏତେବେଳଯାକେ ଆମେ ଭୁଲି ଯାଇଥିଲୁ ଆମର ସେଇ ବୈଜ୍ଞାନିକ ଯୁବକ ବନ୍ଧୁ ଆଉ ତାଙ୍କ ସାଙ୍ଗରେ ଆସିଥିବା ସେଇ ପିଲାଟିକୁ, ଯିଏ ପ୍ରଥମେ ଆମକୁ ଏହି ମହୁଫେଣାର ସନ୍ଧାନ ଦେଇଥିଲେ । ମହୁମାଛିମାନେ ତାଙ୍କ ଉଡ଼ିବା ଆରମ୍ଭ କରିଦେବା ସଙ୍ଗେ ସଙ୍ଗେ ଆମେ ଦେଖିଲୁ ଗୋଟାଏ ନାଲି ମଟରଗାଡ଼ି ମଧ୍ୟ ହଠାତ୍ ଛୁଟିବାକୁ ଆରମ୍ଭ କରିଦେଲା । ମହୁମାଛିମାନେ ଆଉ ଦେଖାଯାଉ ନ ଥାନ୍ତି; କିନ୍ତୁ ତୀରବେଗରେ ଛୁଟି ଚାଲି ଯାଉଥାଏ ମଟରଗାଡ଼ିଟା ରାସ୍ତାଏ ରାସ୍ତାଏ । ମଟରରେ ବସି ମହୁମାଛିମାନଙ୍କର ପିଛା ଧରିଥିବା ସେଇ ବୈଜ୍ଞାନିକ ଭଦ୍ରଲୋକ ବୋଧହୁଏ ମହୁମାଛିମାନଙ୍କର ଗତିବିଧି ସବୁ ବେଶ୍ ଆଗରୁ ଜାଣି ରଖିଥାଆନ୍ତି ।

ଅଳ୍ପସମୟ ପରେ ପୁଣି ଫେରିଆସି ରହିଗଲା ନାଲିମଟରଟି ଯଥାସ୍ଥାନରେ । ଆଖି ଆଗରେ ପୁଣି ଆସି ଉଭାହେଲା ସେଇ ଫୁଲରେ ଫାଟି ପଡୁଥିବା ବଗିଚାଟି । ପାଞ୍ଚ ମାଇଲ ବାଟ ଫେରି ଆସିବାକୁ ମଟରକାର୍‌ଟିକୁ କେତେ ସମୟ ବା ଲାଗିଥିବ ? କିନ୍ତୁ

ସେତିକି ସମୟ ତ ଯଥେଷ୍ଟ ! ମହୁମାଛିମାନେ ତ ଆଉ ରାସ୍ତାଏ ରାସ୍ତାଏ ଉଡ଼ୁ ନାହାନ୍ତି ! ସେମାନେ ସେମାନଙ୍କର ପାଠ ଡାକବା ରାସ୍ତାରେ ଉଡ଼ି ଚାଲି ଆସିଛନ୍ତି ।

ଆମର ପୂର୍ବରୁ ବଗିଚାଟିକୁ ଦେଖି ଚିହ୍ନିଲେ ମଧ୍ୟ ଆଉ ଚିହ୍ନି ହଉନଥିଲା । ଏ କଅଣ ସତରେ ସେଇ ବଗିଚା ? ଅଳ୍ପ ସମୟ ତଳେ ଯୋଉ ବଗିଚାଟିରେ ଗୋଟାଏ ଖୁଡ଼୍ ନ ଥିଲା କି ଖାଡ଼୍ ନ ଥିଲା, ସେଠି ଯେ ଗୋଟାଏ ରୀତିମତ ହାଟ ବସିଗଲାଣି ଏଥିମଧ୍ୟରେ ! ଯୋଉ ବଗିଚାଟାରେ ଗୋଟାଏ ମହୁମାଛିର ଗୁଣୁ ଗୁଣୁ ଗୀତ ନ ଶୁଭୁଥିବାରୁ ମଶାଣି ଭଳି ନିକାଞ୍ଚନ ଲାଗୁଥିଲା, ସେଠି ଏ କଅଣ ? କେତେ ଗୀତ ? କେତେ ନାଚ ? କେତେ ମିଠେଇ ବଣ୍ଟା ଚାଲିଚି ସେଠି ? ବଗିଚାଟା ସତେ ଯେମିତି ଜୀଇଁ ଉଠିଚି ! ଆଉ ତାର ଛାତିର ଧୁକ୍ ଧୁକ୍ ଚାଲିବାକୁ ଆରମ୍ଭ କରିଦେଇଚି !

ମହୁହାଟକୁ ବାଟ ଆଉ କାହାକୁ ଅଛପା ନାହିଁ । ପାଖ ଆଖ, ଦୂରଦୂରାନ୍ତରେ ଯେ ଯୋଉଠି ଥିଲେ ସମସ୍ତଙ୍କୁ ଖବର ହେଇଯାଇଚି ବୋଧହୁଏ ଏଥିଭିତରେ, ଏଇ ହାଟ କଥା ।

କିନ୍ତୁ ଏ ସବୁ ଦେଖିଲା ପରେ ମଧ୍ୟ ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ମୁଁ ତଥାପି ଭାବୁଥିଲି ଏ କଥା ହେଲା କିପରି ? କେମିତି ସେଇ ଗୁପ୍ତଚର ମହୁମାଛିଟା ତାର ଫେଣାର ଅନ୍ୟମାନଙ୍କୁ ଖବର ଦେଲା ଏଇ ମହୁହାଟ କଥା । ଏତେ ଦୂରରୁ କିଏ ଖବର ଦେଲା ଏତେଗୁଡ଼ାଏ ମହୁମାଛିଙ୍କୁ ଏଇ ମହୁହାଟ କଥା ? ଏ ହାଟକୁ ବାଟ ମଧ୍ୟ ପାଇଲେ କେମିତି ସେମାନେ ?

ଆଗରୁ ମୁଁ ଭାବିଥିଲି ବୋଧହୁଏ ମହୁମାଛି ମହୁର ଗନ୍ଧ ପାଇ ମହୁ ଖୋଜି ବୁଲେ; କିନ୍ତୁ ଏତେ ବାଟରୁ ମହୁର ଗନ୍ଧ ବାରିପାରିବା କଅଣ ସମ୍ଭବ ? ସେଦିନ ମୁଁ ବୁଝିଲି କେମିତି ମହୁମାଛିମାନେ ମହୁର ସନ୍ଧାନ କରନ୍ତି ।

ମହୁମାଛି ତାର ଜ୍ଞାତି କୁଟୁମ୍ବ, ସାଇପଡ଼ିଶା ଧରି ଗୋଟିଏ ଦଳରେ ବାସକରେ । ନିଜ କଥା ଚିନ୍ତା କରି ଶିଖିନାହିଁ ସେ । ସବୁବେଳେ ନିଜ ଦଳକଥା ଆପେ ଆପେ ଭାବି ହେଇଯାଏ ତାର; ତେଣୁ ମହୁହାଟକୁ ବାଟ ଯେ ଥରେ ପାଇଯାଇଥାଏ ସେ ଫେରିଆସି

ନିଜ ଦଳକୁ ଖବର ନ ଦେବା ଯାକେ ତର ସହେ ନା ତାକୁ । କିନ୍ତୁ କେମିତି କହିବ ସେ ଏଡ଼େ ବଡ଼ ଶୁଭ ଖବରଟାକୁ ତାର ମୂକ ବଧୀର ଭାଇଗୁଡ଼ାଙ୍କୁ ? କୋଉ ଭାଷାରେ ବି କହିବ ସେ ? ଆପେ ବି ତ ମୂକ ବଧୀର !

କିନ୍ତୁ ପ୍ରକୃତି ମହୁମାଛିକୁ ଭାଷା ଦେଇ ନାହିଁ ସତ; ମାତ୍ର ମହୁମାଛିର ମୁଣ୍ଡର ଗୋଟାଏ ଠାଆରେ ଟିକିଏ କଅଣ ସେ ରଖି ଦେଇଛି । ସେଇ ଟିକକ ଜିନିଷ ମହୁମାଛିର ଟିକି ଟିକି ଗୋଡ଼ ଆଉ ତାର ଅଣ୍ଟାରେ ଦେଇଚି ଅପୂର୍ବ ଛନ୍ଦ ଆଉ ତାଳ । ମହୁମାଛିର ନାଚ ଇ ତାର ଭାଷା ।

ଏପର୍ଯ୍ୟନ୍ତ ମହୁମାଛିର ଦୁଇ ପ୍ରକାର ନାଚ ଲୋକେ ଦେଖିଚନ୍ତି । ଅଷ୍ଟ୍ରିଆ ଦେଶର ଜଣେ ପ୍ରଫେସର ପ୍ରଥମେ ଜାଣିଲେ ଯେ ମହୁମାଛିମାନେ ଏତେ ଛଉ-ନାଚ ବିଦ୍ୟା ଜାଣନ୍ତି ବୋଲି । ଜୀବନକାଳ ମହୁମାଛିମାନଙ୍କ ପିଛା କଟେଇ ଦେଇ ସେ ଲକ୍ଷ୍ୟ କରିଚନ୍ତି ତାଙ୍କର ଏଇ ଦୁଇପ୍ରକାର ନାଚକୁ !

ମହୁମାଛିର ଦୁଇପ୍ରକାର ନାଚ ହେଉଚି ଏହି ପ୍ରକାରର—ଗୋଟିଏ ହେଉଚି ସେଇ ଗାଣ୍ଡିଛନ୍ଦ ନାଚ ଯାହାକୁ ଆମେ ଦେଖିଥିଲୁ ସେତେବେଳେ ସେଇ ପରଦା ଉପରେ । ଅନ୍ୟଟି ହେଉଚି ଗୋଟିଏ "ଠଅ" ନାଚ । ମହୁଫେଣାଠାରୁ ମହୁହାଟର ଦୂରତା ଭେଦ ଯେନି ମହୁମାଛିର ନାଚ ଆପେ ଆପେ ତା ମନକୁ ଆସିଯାଏ । ଯଦି ମହୁର ଖବର ଧରି ବସାକୁ ଉଡ଼ିଆସି ଠାବ କରିବାକୁ ଯାଇଥିବା ମହୁମାଛିଟି ଗୋଟିଏ "ଠ" ଭଳି ଘନ ଘନ ନାଚିବାକୁ ଆରମ୍ଭ କରେ, ତା'ହେଲେ ତାର ସେଇ ନାଚରେ ମାତିଉଠି ବସାର ଅନ୍ୟ ମାଛିମାନେ ବି ସେଇ "ଠ" ଭଳି ନାଚିବାକୁ ଆରମ୍ଭ କରନ୍ତି । ଏତଦ୍ଦ୍ୱାରା ସେମାନେ ନିଜ ଭିତରେ କି ପ୍ରେରଣା ପାଆନ୍ତି କେଜାଣି ଆପେ ଆପେ ବୁଝି ନିଅନ୍ତି ମହୁର ଠାବ । ଏଇ "ଠ" ନାଚର ଅର୍ଥ ହେଲା—"ମହୁହାଟକୁ ବାଟ ବେଶିଦୂର ନୁହେଁ—ବସାର ଅତି ନିକଟରେ ରହିଚି ମହୁ—ଚାଲ ଅନୁସନ୍ଧାନ କର !" ଗାଣ୍ଡିଛନ୍ଦ "୪" ନାଚର ଅର୍ଥ ହେଲା—ମହୁହାଟକୁ ବାଟ ବହୁତ ପଡ଼ିବ; ତଥାପି ଭଲ କରି ନାଚ ! ନାଚ ଇ କହିଦେବ ତୁମକୁ କେତେ ଦୂରରେ, କୁଆଡ଼େ ଆଉ କେଉଁ କୋଣରେ ରହିଛି ସେଇ ମହୁର ଭଣ୍ଡାର ।

ଏହିପରି କାଲ ଠାର କାଲ ମା ବୁଝିଲା ପରି ମହୁମାଛିର ଠାର ମହୁମାଛି ହିଁ ବୁଝେ; ତଥାପି ମତେ ଆଶ୍ଚର୍ଯ୍ୟ ଲାଗୁଥିଲା, ସତେ କ'ଣ କୀଟ ପତଙ୍ଗମାନେ ମୂକ, ବଧୀର ନୁହନ୍ତି, ସେମାନଙ୍କର ବି ଭାଷା ଆଉ ଭାବ ଅଛି ?



( ଠଅନାଚ ) ( ଗାଣ୍ଡିଛନ୍ଦ ନାଚ )

[ କାଲଠାର କାଲ ମାଆ ବୁଝିଲା ପରି ମହୁମାଛିର ଏ ଛଉନାଚର ଅର୍ଥ ମହୁମାଛି ହିଁ ବୁଝେ । ]

ଠିକ୍ ଏତିକିବେଳେ ଆମର ସ୍ୱପ୍ନ ଭାଙ୍ଗିଗଲା । ଘରଟି ହଠାତ୍ ଝଲସି ଉଠିଲା ଆଲୁଅରେ । ହଠାତ୍ ପରଦା ଅନ୍ତରାଳରୁ ଭାସି ଆସିଲା ମିଠା ବଂଶୀସ୍ୱନ ଗୋଟିଏ । ଆଖି ମଳି ମଳି ମୁଁ ପରଦା ଆଡ଼କୁ ଚାହିଁଲି; କିନ୍ତୁ ସେଠି ଆଉ କିଛି ନ ଥିଲା । ଆମର ନନ୍ଦନ-କାନନ ଆଉ ମନ୍ଦାକିନୀ କୁଆଡ଼େ ଉଭେଇ ଯାଇଥିଲେ । ତା ଜାଗାରେ ଝୁଲୁଥିଲା ଗୋଟାଏ ଛେତାଳିଆ ରଙ୍ଗର ପରଦାଟିଏ ମାତ୍ର ! ସେଠି ବଗିଚା ନ ଥିଲା କି ମହୁମାଛି ନ ଥିଲେ କିମ୍ବା ବୈଜ୍ଞାନିକ ଆଉ ନକ୍ସାଟାଣି ବୁଝୋଉ ନ ଥିଲେ ଆମକୁ ତାଙ୍କର ଆବିଷ୍କାର କଥା । "ଠଅ" ନାଚ ଆଉ ଗାଣ୍ଡିଛନ୍ଦ ନାଚର ଚିତ୍ରଗୁଡ଼ାକ ଲିଭିଯାଇଥିଲା ଝରଣା କୂଳର ବାଲିରୁ । ଚଳଚ୍ଚିତ୍ର ଶେଷ ହୋଇଗଲା ।

———

( ଝୁଆଁ ଝୁଇଁ'ରେ ପ୍ରକାଶିତ )

# "ଗଙ୍ଗାମାତା"ଙ୍କ ଜାତକ ଘଡ଼ି

## ମୋ ଡାଏରୀ ପଢ଼ି ବାପା କ'ଣ କହିଲେ—

[ ଘଡ଼ି ଦେଖି ଏକା ମଣିଷ ଆତଯାତ ହୁଅନ୍ତି ନାହିଁ—କେତେକ କୀଟପତଙ୍ଗ ମଧ୍ୟ ଘଡ଼ି ଦେଖିଲା ଭଳି କାମ କରନ୍ତି । ଖରାଦିନେ ସୂର୍ଯ୍ୟାସ୍ତର ଠିକ୍ ପରେ ପରେ ଗୋଟାଏ ଗୋଟା ଭିତରେ କୌଣସି ଗଛର ଗଣ୍ଡି ପରୀକ୍ଷାକଲେ ଯେତେଦୂର ସମ୍ଭବ ଏମିତି ଗୋଟାଏ ଅଦ୍ଭୁତ କଥା ଦେଖାଯିବ । ମାଟି ଭିତରେ ଥାଇ ସୂର୍ଯ୍ୟାସ୍ତ ସେମାନେ କପର ଦେଖିପାରନ୍ତି ! ସୂର୍ଯ୍ୟ ବୁଡ଼ିଗଲେ ସେମାନେ ଏକାସାଙ୍ଗେ ବାହାରନ୍ତି ମାଟିରୁ, ଏକାସଙ୍ଗେ ବସନ୍ତି ଏନ୍ତୁଡ଼ିଶାଳରେ, ଆଉ ଏକାସାଙ୍ଗେ ସେମାନଙ୍କ ପିଠି ଚିରି ତହିଁରୁ ବାହାରନ୍ତି ଛୁଆ, ଯେଉଁମାନେ ଏକାସାଙ୍ଗେ ବଡ଼ ହୋଇ ପୋକ ଭିତରେ ଗୋଟିଏ ଗୋଟିଏ ଝିଙ୍କାରୀ ପାଲଟି ଯାଆନ୍ତି । ପରଦିନ ସକାଳୁ ସେମାନେ ସ୍ୱାଗତ ଜଣାନ୍ତି ନୂତନ ସୂର୍ଯ୍ୟଙ୍କୁ । ଜୀବନରେ ସୂର୍ଯ୍ୟ ଦର୍ଶନ ଏଇ ପ୍ରଥମ ଓ ଶେଷ ମଧ୍ୟ ହୋଇପାରେ । ସମୟଜ୍ଞାନ କି ଅଦ୍ଭୁତ ଏଇ ସାମାନ୍ୟ ପତଙ୍ଗଗୁଡ଼ିକର ! ]

ଯମୁନା ! ଯମୁନା ! ଯମୁନା !

ଘରେ ଆମର ଚହଳ ପଡ଼ିଗଲା । ଦିନ ଦି'ପହର ବେଳା । ଗାଈ ଜଗୁଆଳ ପିଲାଟି କାନ୍ଦିକାନ୍ଦି ଆସି ଖବର ଦେଲା—ଗୋଠ ଛାଡ଼ି ଯମୁନା ଅନ୍ତର୍ଦ୍ଧାନ ହୋଇଯାଇଛି । ସବୁଆଡ଼େ ଖୋଜା ସରିଲାଣି; କିନ୍ତୁ ଯମୁନାର ଖୋଜଖବର ମିଳିଲା ନାହିଁ ।

ଖବର ଶୁଣି ମୁଣ୍ଡରେ ବଜ୍ର ପଡ଼ିଗଲା । ଗର୍ଭିଣୀ ଗାଈଟା ଆଜି କି କାଲି ଛୁଆ ଦବାର କଥା । ଏ ଉଦୁଉଦିଆ ଦି' ପହରଟାରେ ଗଲା କୁଆଡ଼େ ?

ତଳ ତାଡ଼ିକୁ ଉପର ତାଡ଼ି । ମାଟି ଖାଇ ଫୁଟୁଛି । ସାଇଁ ସାଇଁ ହୋଇ ଝାଞ୍ଜି ପିଟୁଛି । ପଣାସଂକ୍ରାନ୍ତି ପୁଣି ଆଜି । ଆଜି ପରି ଦିନେ ଗାଈଟାଏ ହଜିଗଲା !

ରାମଲକ୍ଷ୍ମଣ ପରି ଆମେ ଦି'ଭାଇ ଚାଲିଚୁ ଗହୀରେ ଗହୀରେ । ଚାଲି ଚାଲି ପାଦରେ ଗୁନ୍ଧି ଫୁଟିଲାଣି । ବାଟରେ ଚିହ୍ନା ଅଚିହ୍ନା ଯିଏ ଆଖିରେ ପଡୁଛି ପଚାରୁଚୁ, "ହଇଓ ଭାଇ ! କାଳିଆସିଆ, ଖାଡ଼ିଆ ଶିଙ୍ଗା ଗର୍ଭିଣୀ ଗାଈଟାଏ ଏବାଟେ ଯିବାର ଦେଖିଚ କି ?"

କିନ୍ତୁ ସେଇ ଗୋଟାଏ ଉତ୍ତର—"ନାଇଁ ତ ଭାଇ, ଏମିତିକିଆ ଜନ୍ତୁଟାଏ ଏ ଖଣ୍ଡମଣ୍ଡଳରେ ଆମେ ଦେଖିନୁ !"

ପଶ୍ଚିମ ଆକାଶ ରଙ୍ଗା ଧଇଲାଣି । ଆଉ ଟିକେକେ ସୂର୍ଯ୍ୟ ବୁଡ଼ିଯିବେ । ଅନ୍ଧାର ହୋଇଯିବ । ଏତିକିବେଳେ ଆମେ ଦେଖୁ ତ ଗୋଟାଏ ବୁଢ଼ା ଲଇଁ ଲଇଁ ଚାଲିଛି ଗହୀର ମଝିରେ ମଝିରେ । ବୁଢ଼ାକୁ ଦେଖି ବନୁଭାଇ ଡାକ ମାଇଲେ, "ହୋ ମଉସା ! ନାଲିଆସିଆ ଖାଡ଼ିଆ ଶିଙ୍ଘା, ଗର୍ଭିଣୀ ଗାଈଟାଏ ଏ ବାଟରେ ଯିବାର ଦେଖିଚ କଉ ?"

ବୁଢ଼ା ଶବଦ ବାରି ଟିକେ ଏଣିକି ତେଣିକି ଅନେଇଲା । ତା ବାଆଦେ ଜବାବ ଦେଲା, "ଆରେ ପୁଅ ! ସେ କୁଆବଣିଆ ତୋଟାଟା ଟିକେ ଦେଖିଲୁ । କଅଣ ଗୋଟାଏ ଖସର ଖସର ହଉଥିଲା ସେଠେଇ ।"

ବୁଢ଼ା ତା ବାଟରେ ଚାଲିଗଲା ।

କୁଆବଣିଆ ତୋଟା ? କୁଆବଣିଆ ତୋଟା କଥା ଶୁଣିଲା ବେଳଠୁଁ ମୋ ହାଲକ ଶୁଖିଲାଣି । ଏ ସନ୍ଧ୍ୟାବେଳେ, ପୁଣି ଏମିତି ମୁହଁ ସନ୍ଧ୍ୟାବେଳେ ସେଠିକି କିଏ ଯିବରେ ବାବା ! ଭାରି ଭାରି କଥାମାନ ଲୋକେ କହନ୍ତି ଏଇ ତୋଟା ବିଷୟରେ । ତଥାପି ଆମେ ଗଲୁ । କାଳେ ଯମୁନାର ଛୁଆ ହୋଇଥିବ ସେଇଠି—କାଳେ ତା ଛୁଆକୁ ଉରମାଡ଼ିବ ସେ ଅନ୍ଧାରରେ । କାଳେ କାହା ଦୃଷ୍ଟି ପଡ଼ିଯିବ କଅଁଳା ବାଛୁରୀଟା ଉପରେ ।

କୁଆବଣିଆର ଗହଳିଆ ଆମ୍ବଗଛ ଗୁଡ଼ାକରେ ଆମ୍ବ ଲଦି ହୋଇଯାଇଥାଏ । ପଣାକୁ ବଣା ହେଲାଭଳି ପାଚିଲା ଆମ୍ବ ବ କାଁ ଭାଁ ପଡ଼ୁଥାଏ । ସବୁ ଗଛମୂଳ ଦେଖି ଦେଖି ଶେଷରେ ତୋଟା ଦାଢ଼ଠେଇଁ ଆମେ ପହଞ୍ଚିଲୁ । ଏତିକିବେଳେ କିଏ ଗୋଟାଏ ଘୁମୁରି ଉଠିଲା ।

ମୁଁ ଚମକି ପଡ଼ିଲି । କିଏ ? କିଏ ଗୋଟାଏ ଫଁ ଫଁ ହେଲା ? କିଏ ?

ଏତିକିବେଳେ ବନୁଭାଇ ଖୁସିଟାଏ ହେଇ ପାଟି କରି ଉଠିଲେ—"ଯମୁନା କଲୋ ! ତୁ ଏଇଠି ?—ଆଉ ଆମେ ବଉଁଶଟାପାକ ପୃଥିବୀ ଅଣ୍ଡାଳୁଚୁ ତେଣେ ।"

ବନୁଭାଇଙ୍କ ପାଟି ବାରୁ ଯମୁନା ଜବାବ ଦେଲାଭଳିଆ କହିଲା — "ହମ୍ବା, ହମ୍ବା"

ମୁଁ ଯମୁନା ପାଖକୁ ଦଉଡ଼ି ଯାଉଥିଲି, ବନୁଭାଇ ମନା କଲେ । କହିଲେ, "ରହ ରହ, ତା ପାଖକୁ ଯାଆନା — ତାଆର ପରା ଛୁଆ ହବ ?"

"ଛୁଆ ହବ ?" ଯମୁନାର ଆମର କୁନି ବାଛୁରୀ ହବ ? ଏତିକିବେଳେ ଗୋଟାଏ କଥା ମନେ ପଡ଼ିଗଲା ମୋର । ମୁଁ ବନୁଭାଇଙ୍କୁ କହିଲି "ଭାଇ, ଯମୁନା ଛୁଆର ନାଁ କଅଣ ଦବା କହିଲ !" ମୁଁ ଭାବୁଚି ତା ନାଁ ଦବା "ଗଙ୍ଗାମାତା ।" କଅଣ କହୁଛ ?

ବନୁଭାଇ ପଚାରିଲେ, "ଯଦି ତାର ଅଣ୍ଡିରାଛୁଆଟିଏ ହବ, ତା ହେଲେ ?"

ମୁଁ ଟିକେ ଗୋଳମାଳରେ ପଡ଼ିଗଲି; କିନ୍ତୁ ଏତିକିବେଳେ ଆଉ ଗୋଟାଏ କଥା ମୋର ମନେ ପଡ଼ିଗଲା । ସେ କଥା ଆଉ ନ ଭାବି ହଠାତ୍ ମୁଁ କହିଲି, "ଭାଇ ! ଯମୁନା ଛୁଆର ଗୋଟାଏ ଜାତକ ହୁଅନ୍ତା ନାହିଁ ?"

ବନୁ ଭାଇ ଟିକେ ହସିଲେ; କିନ୍ତୁ ସେ କହିଲେ, "ଆଚ୍ଛା ହଉ, ଏଥର ଆମ ଘରେ ଗାଈ ଗୋରୁଙ୍କର ବି ଜାତକ ହବ । କିନ୍ତୁ ଅସଲ କଥା ହେଲା ଜାତକ–ଘଡ଼ି କେମିତି ଜାଣିବା କହିଲୁ ? ଆମର ତ ଘଡ଼ି ନାହିଁ !" ମୁଁ ପଶ୍ଚିମ ଦିଗକୁ ଚାହିଁଲି । ସୂର୍ଯ୍ୟ ଠିକ୍ ମା କୋଳକୁ ଡେଇଁ ପଡୁଥିଲେ । ମୁଁ ଭାଇଙ୍କି କହିଲି, "ହେଇଟି ଭାଇ ! ସୂର୍ଯ୍ୟାସ୍ତ ହେଲା । ଆଜି ପରା ପଣାସଂକ୍ରାନ୍ତି । ସୂର୍ଯ୍ୟାସ୍ତବେଳ ଆଜି କେତେବେଳେ ପାଞ୍ଜିରେ ?"

ବନୁଭାଇ ଟିକିଏ ଚିନ୍ତାକରି କହିଲେ, "ମନେ ଅଛି ଯେ, ହେଲେ ଛୁଆ କେତେବେଳେ ଜନ୍ମହେବ କେଜାଣି ! ଆଉ କେତେ ଘଡ଼ି ଲାଗିବ କେଜାଣି ?"

ଏତିକି ବେଳେ ପାଖ ଆମ୍ବଗଛ ଡାଳରେ ଝିଁ ଝିଁ ହୋଇ ଗୋଟିଏ ଝିଙ୍କାରୀ ବୋବେଇବାକୁ ଲାଗିଲା ।

ହଜିଲା ଦରବ ପାଇଲା ପରି ଖୁସିଟାଏ ହୋଇଗଲେ ବନୁଭାଇ । ଝିଙ୍କାରୀ ପାଟିରୁ କଅଣ ବାରିଲେ ସେ କେଜାଣି ଆମ୍ବଗଛ ମୂଳକୁ ଦଉଡ଼ିଗଲେ । ତାପରେ ସେଇ ଅନ୍ଧାରୁଆ ଜାଗାରୁ ପାଟିକରି ଉଠିଲେ, "ଯମୁନା ଛୁଆର ଜାତକ ଆଜି ନଷ୍ଟ ହେବରେ ବୁଲୁ ! ମୋ ଘଡ଼ି ମିଳିଗଲା !"

ଏତିକି କହି ଆମ୍ବଗଛ ମୂଳେ ନଇଁ ପଡ଼ି ସେ କଅଣ ଖୋଜି ବସିଲେ । ଆଲୁଅ କମିଗଲାଣି ସେତେବେଳକୁ । ତାହାଁକ ଗହଳିଆ ତୋଟା ଭିତରଟା କେତେବେଳୁ ଅନ୍ଧାର ହେଇଗଲାଣି । ସୂର୍ଯ୍ୟ ଠିକ୍ ବୁଡ଼ିଗଲେ । ବନୁଭାଇ ପକେଟରୁ ବାହାର କଲେ ଗୋଟିଏ ଦିଆସିଲି ପେଡ଼ି । କାଠିଟିଏ ବାହାରକଲେ । ଚକ୍‌କରି ଜଳି ଉଠିଲା କାଠିଟା । ଆଲୁଅ ଟିକକରେ ଚମକି ଉଠିଲା ଗଛ ମୂଳଟା ।



[ 'ଦଉଡ଼ ଆ'ରେ ବୁଲୁ' ଦେଖିବୁ ଆ—ହେଇ ସେମାନେ ବାହାରିଲେଣି'—
ବନୁଭାଇ ପାଟିକଲେ । ]

ବନୁଭାଇ ପାଟିକଲେ, "ଦଉଡ଼ଆରେ ବୁଲୁ, ଦେଖିବୁ ଆ—ହେଇ ସେମାନେ ମାଟିଭିତରୁ ବାହାରିଲେଣି ।"

ମୁଁ ଦଉଡ଼ିଗଲି ଗଛ ମୂଳକୁ । ଦିଆସିଲି କାଠିଟା ଲିଭି ଲିଭି ଯାଉଥାଏ । କିନ୍ତୁ ସେତିକି ଝାପ୍‌ସା ଆଲୁଅରେ ମୁଁ ଦେଖିପକେଇଲି ସେମାନଙ୍କୁ ।

ପ୍ରାୟ କୋଡ଼ିଏ କି ପଚିଶିଟା କି ପ୍ରକାର ପୋକ ମାଟିରୁ ବାହାରି ଲସର ପସର ହୋଇ ଚଢ଼ି ଚାଲିଛନ୍ତି ଗଛ ଉପରକୁ । ଟିକିକ ପରେ ସେମାନେ ହଠାତ୍ ଥିର ହୋଇଗଲେ । ଗଛର ମୋଟା ଛାଲିକୁ କାବୁଡ଼ି ରହିଲେ । ଯେ ଯେଉଁଠି ସେ ସେଇଠି ରହିଗଲେ । ସତେ ଯେମିତି କାହାର ବୋଲ ଶୁଣିଲା ମାତ୍ରେ ସେମାନେ ହଠାତ୍ ଥିର ହୋଇଗଲେ ।

ମୁଁ ବନୁଭାଇଙ୍କୁ ଚାହିଁଲି ।

ସେ କହିଲେ—

"ଖରିଦନ ହୋଇଗଲା । ଏଥର ତାଙ୍କର ନିଦ ଭାଙ୍ଗିଲା । ଏଥର ପ୍ରତିସଞ୍ଜରେ, ସୂର୍ଯ୍ୟାସ୍ତର ଠିକ୍ ପରେ ପରେ ବାହାରିପଡ଼ିବେ ଏମାନେ ମାଟିଭିତରୁ ଏମିତ ଧାଡ଼ି ଧାଡ଼ି ହୋଇ ।"

ବାହାରି ପଡ଼ିବେ କିଏ ? କୋଉମାନେ ? ଧାଡ଼ି ଧାଡ଼ି ହୋଇ ? ବନୁଭାଇଙ୍କର ଏ ପାଗଳିଆ କଥା ଶୁଣି ମୋ ଛାତି ଧଡ଼ଧଡ଼ ହେଲା । ମୁଁ ଭାବିଲି ବୋଧେ ଖରାରେ ଚାଲି ଚାଲି ତାଙ୍କ ମୁଣ୍ଡ କଅଣ ହୋଇଗଲାଣି । ମୁଁ ବଲ ବଲ କରି ତାଙ୍କ ମୁହଁକୁ ଚାହିଁଲି ।

ମୋ ହାବଭାବ ଦେଖି ବନୁଭାଇ ଠିକ୍ ଠଉରେଇ ନେଲେ ମୋ ମନକଥା । କହିଲେ, "କରେ ? ଡରୁଚୁ କରେ ? ତୁ ପରି ତୋ ଯମୁନାକୁଆର ଜାତକ-ଘଡ଼ି ଦେଖିବୁ ! ଦେଖ୍ ସାମନାରେ ତୋର ତ କୋଡ଼ିଏ ତିରିଶ ଘଣ୍ଟା ଥୁଆ ହୋଇଛନ୍ତି !"

ଘଣ୍ଟା ? କି ଘଣ୍ଟା ? ଘଣ୍ଟା କିଏ ଆଉ ପୋକ କିଏ ? ଠିକ୍ ଏତିକିବେଳେ ଚଡ଼୍ ଚଡ଼୍ ହୋଇ କଅଣ ଗୁଡ଼ାଏ ଶବ୍ଦ ହେଲା ।

ହାଆସିଲି କାଠିଟାଏ ଲଗାଉ ଲଗାଉ ବନୁଭାଇ କହିଲେ, "ହେଇ ବର୍ତ୍ତମାନ ସମସ୍ତ ହାରିହାରି ଛଅଟା ବାଆର ହେଲା । ଆଜି ପଣାସଂକ୍ରାନ୍ତିରେ ଛଅଟା ବାଆରରେ ସୂର୍ଯ୍ୟାସ୍ତ । ୟା ପରଠୁ ସମୟ କହିବାକୁ ଆଉ ଅସୁବିଧା କିଛି ନାହିଁ । ଆଗରେ ଥୁଆହୋଇଚି ଘଣ୍ଟା ଦୋକାନ !"

ବନୁଭାଇଙ୍କ ଦିଆସିଲି କାଠି ପୁଣି ଯେତେବେଳେ ଜଳଉଠେ, ମୁଁ ଦେଖେତ ସେହି ପୋକଗୁଡ଼ାକ, ଯାହାଙ୍କର ପିଠି ଚଡ଼୍ ଚଡ଼୍ ହୋଇ ଫାଟିଯାଇଥିଲା ଟିକେ ଆଗରୁ, ତାଙ୍କର ଫଟା ପିଠି ଭିତରୁ କଅଣ ଗୋଟିଏ ଗୋଟିଏ ବାହାର ଆସୁଥିଲେ ।

ବନୁଭାଇ କହିଲେ, "ଏଇଠୁ ପ୍ରାୟ ଦଶମିନଟ୍ ପରେ ଏଇ ପୋକଗୁଡ଼ାକ ଖୋଳପା ଭିତରୁ ପୂରାପୂରି ବାହାରିପଡ଼ିବେ । ଆଉ ଗୋଟିଏ ଗୋଟିଏ ନୂଆ ଜୀବ ! ଦେଖ୍ !"

ଗୋଟାକ ପରେ ଗୋଟାଏ ଦିଆସିଲି କାଠି ବନୁଭାଇ ମାରୁଥାନ୍ତି, ଆଉ ମୁଁ ଦେଖୁଥାଏ ।

ସତକୁ ସତ ପ୍ରାୟ ଦଶମିନଟ ଭିତରେ ନୂଆ ନୂଆ ପୋକ ବାହାରି ଆସିଲେ ଖୋଳପାଗୁଡ଼ାକ ଭିତରୁ । ଖୋଳପାଗୁଡ଼ାକୁ ଗୋଡ଼ରେ ଜାବୁଡ଼ି ଧରି ସେମାନେ ଖୋଳପା ପିଠିରେ ଲଇହେଲା ଭଳିଆ ବସିପଡ଼ିଲେ । ସମସ୍ତେ ଏକାସାଙ୍ଗେ ଏକାପ୍ରକାର କଥା କରୁଥିଲେ ।

ବନୁଭାଇ ଘଡ଼ି ଦେଖିଲା ଭଳିଆ କହିଲେ, "ବର୍ତ୍ତମାନ ସମୟ ହେବ ଛଟା ବାଇଶି । ହଁ, ପୁଣି ଆସନ୍ତା ପନ୍ଦର ମିନଟ୍ ଭିତରେ କଅଣ ହଉଛି ଦେଖ୍ ।"

ଆମେ ଅପେକ୍ଷା କଲୁ । ସେତେବେଳକୁ ଯମୁନା କଥା ମୁଁ ଭୁଲି ଗଲେଣି । ବନୁଭାଇଙ୍କ କଥା ଶୁଣି ମୁଁ ଯେତିକି ଆଶ୍ଚର୍ଯ୍ୟ ହଉନଥିଲି ଏ ପୋକଗୁଡ଼ାଙ୍କର ଅବସ୍ଥା ଦେଖି ମୁଁ ସେତିକି ବାବା ହଉଥିଲି ।

ହାତରେ ଘଣ୍ଟାବାନ୍ଧି କାମ କଲା ଭଳିଆ ସେମାନେ ଜନ୍ମ ହଉଚନ୍ତି ? ବାବା କଥା ! ମୁଁ ଆଖିକି ବିଶ୍ୱାସ କରିପାରୁ ନ ଥାଏ ।

ଦିଆସିଲି କାଠିଟାଏ ପୁଣି ଜଳଉଠିଲା । ତରତର କରି ମୁଁ ସେମାନଙ୍କୁ ନଘା କଲାବେଳକୁ ସେମାନେ ଏକାସାଙ୍ଗେରେ ଠିଆହୋଇଥିଲେ ଖୋଳପା ପିଠି ଉପରେ ।

ସେମାନଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେମିତି ସେମାନେ କାହା ବୋଲମାନ "ମାସ୍‌ଡ୍ରିଲ" କରୁଛନ୍ତି ସ୍କୁଲ ପିଲାଙ୍କ ଭଳି !



[ ସତେ ଯେମିତି କାହା ବୋଲ ମାନ "ମାସ୍‌ଡ୍ରିଲ୍" କରୁଛନ୍ତି ସେମାନେ ସ୍କୁଲ ପିଲାଙ୍କ ଭଳି । ]

[ ସତେ ଯେମିତି କାହା ବୋଲ ମାନ "ମାସ୍‌ଡ୍ରିଲ୍" କରୁଛନ୍ତି ସେମାନେ ସ୍କୁଲ ପିଲାଙ୍କ ଭଳି । ]

ବନୁଭାଇ ପୁଣି ସମୟ ପଢ଼ିଲେ । ସେ କହିଲେ—"ଏଇଲେ ଛଅଟା ଛତିଶ୍ ହେଲା । ପୁଣି ଦେଖ୍—ଆସନ୍ତା ବାର ମିନଟ୍ ଭିତରେ କଅଣ ହଉଛି !"

ମୋ ଛାତି ଦମ୍ ଦମ୍ ପଡ଼ିଲାଣି ସେତେବେଳକୁ । ଏ ଅନ୍ଧାର ଜଙ୍ଗଲଟିଆ, ତା ସଙ୍ଗକୁ ବନୁଭାଇଙ୍କର କଥା ଆଉ ପୋକଙ୍କର କାମ । ଖୁସିଲାଗୁଥାଏ ଯେତିକି ଡର ମାଡ଼ୁଥାଏ ତାଠୁଁ

ବେଶି ! ଏ ହଉଚ କୁଆବଣିଆ ଡୋଙ୍ଗା । ଏଠେଇଁ ବହୁ ଦେବତା ଥାଆନ୍ତି ବୋଲି ଲୋକେ କହନ୍ତି । ଭାଗ୍ୟ ଭଲ ଏ ପର୍ଯ୍ୟନ୍ତ ଏଇ ପୋକ ଦେବତା ଛଡ଼ା ଆଉ କୋଉ ଦେବତାଙ୍କର ହାବୁଡ଼େ ପଡ଼ନାହୁଁ ଆମେ ।

ଦଆସିଲି କାଠିମାରି ବନୁଭାଇ ପାଟିକରି ଉଠିଲେ "ହେଇ ଦେଖ୍, ହେଇଦେଖ୍— ସେମାନଙ୍କର ଡେଣା ଗଜୁରିଲା । ବର୍ତ୍ତମାନ ଦେଖୁଛୁ ତ ସେମାନଙ୍କୁ । କେମିତି ସାଙ୍ଗହେଇ କାମ କରୁଛନ୍ତି ସେମାନେ ଘଣ୍ଟା କଣ୍ଟା ଭଳି । ସମୟ ହେଲା ଛଅଟା-ଅଠଚାଳିଶ ।"

ଆମେ ଆଉ ପ୍ରାୟ ଉଣେଇଶ ମିନଟ୍ ଅପେକ୍ଷା କରିଚୁ ସେଇ ଗଛମୂଳେ, ବନୁଭାଇ ମାରିଲେ ତାଙ୍କର ଦଆସିଲି କାଠି ।

ସେତେବେଳକୁ ଆମ ଆଗରେ, ଆମ୍ବ ଗଛର ଟାଆଁସା ଖୋଳପାକୁ ଜାବୁଡ଼ଧରି ବସି ରହିଥିଲେ ଗୋଟିଏ ନୂଆ କିସମର ପତଙ୍ଗ । ସେମାନେ ଆଉ ସେଇ ପଞ୍ଚାବନ ମିନଟ୍ ତଳର ପୋକ ହେଇ ନ ଥିଲେ । "ବର୍ତ୍ତମାନ ସମୟ ହେଲା ଠିକ୍ ସାତଟା ବାଜି ସାତ ମିନଟ୍ ।" ବନୁଭାଇଙ୍କ ଡାକ ଶୁଣି ମୋର ଚେତାହେଲା ।

ଏତିକି ବେଳେ ଗୋଟାଏ ଫଁ ଫଁ ଶବ୍ଦ ଶୁଣାଗଲା ଆମ ପଛପଟୁ । ଆମର ନିଦ ଭାଙ୍ଗିଗଲା । ଦଉଡ଼ି ଯାଇ ଦେଖୁଚି ଯମୁନା ଦୃଷ୍ଟି ପକଉଚି ତାର କଅଁଳା ବାଛୁରୀଟାକୁ ।

ଯମୁନା ! ଯମୁନା ଡାକି ଡାକି ମୁଁ ଆଉଁସି ଦେଉଥିଲି ଯମୁନାକୁ । ଯମୁନା ଖାଲି ଘୁ ମୁ ରୁଥାଏ ।

ମନଖୁସିରେ ବନୁଭାଇ କହି ପକେଇଲେ, "କିରେ ! ଯମୁନା ଛୁଆର ଜାତକ ଘଡ଼ି ମନେ ରହିଲା ତ ! କାଲି ଗଣେଶ ନାହାକଙ୍କୁ ଡାକି କହିବୁ ଯେ ସନ୍ଧ୍ୟା ସାତଟା ବାଜି ସାତମିନଟ୍ ସମୟେ, ପଣା ସଂକ୍ରାନ୍ତି, ମଙ୍ଗଳବାର ଦିନ ଯମୁନାର ଗୋଟିଏ ଝିଅ ଜନ୍ମହେଲା । ହଁ ତୋର କଥାଇ ରହିଲା । ଝିଅର ନାଆଁ ଦଆହେବ 'ଗଙ୍ଗାମାତା ।'

ଯମୁନା ଆଉ ତା ଛୁଆକୁ ଘିନି ଘରକୁ ଫେରିଲା ବାଟରେ ମୁଁ ସେଇ ଝିଙ୍କାରୀଙ୍କର ମାସ୍‌ତ୍ରିଲ୍ କଥା ଭାବୁଥାଏ । ମୁଁ ଭାଇଙ୍କି ପଚାରିଲି, "ଆଚ୍ଛା, ଭାଇ, ଏ ଝିଙ୍କାରୀମାନେ ପୁଣି ଯିବେ କୁଆଡ଼େ ? ସେମାନେ କଅଣ ବଡ ହୋଇଗଲେ ଏଇ ଘଣ୍ଟାକ ଭିତରେ ?"

ବନୁଭାଇ କହିଲେ, "ହଁ, ସେମାନେ ବଡ଼ ହୋଇଗଲେ । ତେବେ ସେମାନେ କଅଣ ଏଇଲାଏ ଜନ୍ମ ହୋଇ ଏଇ ଘଣ୍ଟାକ ଭିତରେ ବଡ଼ ହୋଇ ଗଲେ ବୋଲି ତୁ ଭାବୁଚୁ କି ? ନା—କଥା କଅଣ କି ପ୍ରତିବର୍ଷ ଖରାଦିନେ ସନ୍ଧ୍ୟାବେଳକୁ ଝିଙ୍କାରୀମାନଙ୍କର ପିଉପାମାନେ ମାଟିରୁ ବାହାରନ୍ତି । ଏ ପିଉପାମାନେ ବହୁ ଦିନ ଧରି ମାଟି ଭିତରେ ଥାଆନ୍ତି । ଖରାଦିନକୁ ବାହାରନ୍ତି । ବାହାରକୁ ବାହାରିଲେ ଏମିତି ତାଙ୍କ ଦିହଖୋଳପା ଫାଟେ ଆଉ ତା ଭିତରୁ ଏମିତି ଝିଙ୍କାରୀମାନେ ବାହାରନ୍ତି । ଆଉ ଏଇମାନଙ୍କର ଅବସ୍ଥା ଯାପରେ କଅଣ ହବ ଜାଣୁ ?"

"କଅଣ ହବ ଭାଇ ?"

"ଆଉ ହବ କଅଣ ? କାଲି ସକାଳୁ ମନ ଖୁସିରେ ଯେଉଁଏ ଏମାନେ ବୁଲିବେ । ସୂର୍ଯ୍ୟ କିରଣରେ ପାଗଳ ହେବେ । ପୁରୁଷ ଝିଙ୍କାରୀଗୁଡ଼ିକ ଝିଁ ଝିଁ ହୋଇ ଗୀତ ବୋଲି ବୋଲି ଏ ଗଛରୁ ସେ ଗଛ ଉଡ଼ି ବୁଲିବେ । ସ୍ତ୍ରୀ ଝିଙ୍କାରୀ ଅଣ୍ଡା ଦେବାକୁ ପ୍ରସ୍ତୁତ ହେବେ । ତା ପରେ ପରେ ସେମାନେ ମରିଯିବେ— ।"

ମରିଯିବେ ? ମୁଁ ଚମକି ପଡ଼ିଲି । "ଏତେ ସୁନ୍ଦର ସୁନ୍ଦର ଜୀବଗୁଡ଼ିକ, ଜନ୍ମ ହେଉ ହେଉ ମରିଯିବେ ?"

କିନ୍ତୁ ବନୁଭାଇଙ୍କ କଥା ଅବିଶ୍ୱାସ କରିବାର ନୁହେଁ । ସେମାନ ମରିଯିବେ ନିଶ୍ଚୟ । କିନ୍ତୁ ଅଣ୍ଡା ଦେଇ ଦେଇ ଯିବେ ଆସନ୍ତା ବର୍ଷ ଖରାଦିନ ପାଇଁ ।

ତା ପରଦିନ ଆମେ ଗଣେଶ ନାହାକଙ୍କୁ ଡାକିଲୁ । ଯମୁନା ଝିଅର ଜାତକ ହେଲା । ଅବଶ୍ୟ ଜାତକ-ଘଡ଼ିଟାକୁ ବିଶ୍ୱାସ କରିବା ପାଇଁ ନାହାକେ ରାଜି ହେଉ ନ ଥିଲେ; କିନ୍ତୁ ପରେ ରାଜି ହେଲେ । ତାର ନାଆଁ ବି ରହିଲା "ଗଙ୍ଗାମାତା" ।

ତାପରଠୁଁ ପ୍ରତିବର୍ଷ, ଖରାଦିନେ ସନ୍ଧ୍ୟାବେଳେ ସମୟେ ସମୟେ ମୁଁ ଦେଖିବାକୁ ଯାଏ ସେଇ ଝିଙ୍କାରୀମାନଙ୍କୁ । ସେମାନଙ୍କର ଗୀତ ସାଙ୍ଗେ ଗୀତ ମିଶାଇ ମୁଁ ବୋଲେ—

ଝିଁକାରୀ ବୋଲେ……

ଝିଁ ଝିଁ ଝିଁ ଝିଙ୍କାରୀ ବୋଲେ

ସାଇଁ ସାଇଁ ସାଇଁ ଝଞ୍ଜା ବୋହିଲେ

ଝାଇଁ ଝାଇଁ ଖସ୍ରି ମାଇଲେ
ବରଷ ବରଷ ନଦ ମୋ ଭଙ୍ଗେ
ମାଟିର ତଳେ······

ଆଲୁଅ ସହେନା ଆଖି ମୋହର
ପଚ୍ଛିମ ଆକାଶ ହେଲେ ଅନ୍ଧାର,
ମାଟି ଘର ତେଜି ହୁଏ ବାହାର
ମୋ ଦେହ ହାଡ଼ୁଆ ଖୋଳପା ଭଙ୍ଗେ
ଗଛର ଡାଳେ······

ନୂଆ କଳେବର ହୁଏ ମୋହର
ଘଣ୍ଟାକଣ୍ଟା ଦେଖି ଲାଗେ ମୋ ପର
ଆଲୁଅକୁ ଆଉ ନ ଥାଏ ଡର
ସୂର୍ଯ୍ୟର ତେଜ ନଏ ମୋର ଲାଜ ।
ପାଗଳ କରାଏ ହେଲେ ।
ଝିଁ ଝିଁ ଝିଁ ଝିଙ୍କାରୀ ବୋଲେ······

———

# ପତଙ୍ଗ ଜଗତର "ଯଦୁ ଅଜା"

ମୋ ଡାଏରୀ ପଢ଼ି ବାପା କଅଣ କହିଲେ—

[ ନାତିଏ ହସିଲେ ଅଜା ହସନ୍ତି । ନାତିଏ କାନ୍ଦିଲେ ଅଜା କାନ୍ଦନ୍ତି । କିନ୍ତୁ ଅଜା ଆଉ ନାତିଙ୍କ ଭିତରେ ପ୍ରକୃତ ତଫାତ୍ କଅଣ ଜାଣ ? ସେଇଟା ଜଣାପଡ଼େ ଅଜାଙ୍କର ହସ ଆଉ କାନ୍ଦ ବେଳେ । ଅଜା ଯେତେବେଳେ ହସନ୍ତି ନାତିଏ ତ ହସିବାର କଥା । ମାତ୍ର ଅଜା ଯେତେବେଳେ କାନ୍ଦନ୍ତି ନାତିଏ ତାଙ୍କର ଅଜାଙ୍କ ସାଙ୍ଗେ ନ କାନ୍ଦି କେବଳ ହସରେ ଲୁରୁଲୁ ଥାଆନ୍ତି । ସେମାନେ କହନ୍ତି ଅଜାଙ୍କର ହସ କାନ୍ଦ ସବୁ ସମାନ ! ଏମିତି କଥା ନାତିଙ୍କୁ ଏମିତିକିଆ ଜଣେ ଜଣେ ଅଜା ବି ସବୁବେଳେ କୁଆଡ଼ୁ ଆସି ଯୁଟି ଯାଆନ୍ତି । କେବଳ ମଣିଷଙ୍କ ପାଇଁ ନୁହେଁ, ବିଧାତା ପଶୁ ପକ୍ଷୀ କୀଟ ପତଙ୍ଗମାନଙ୍କ ହସ ପାଇଁ ବି ଖଞ୍ଜିଚି ଗୋଟିଏ ଗୋଟିଏ ଅଜା । ତେବେ ସେଠି ଅଜାନାତିଙ୍କ ରହସ୍ୟଟା ଟିକିଏ ଦୂରକୁ ଚାଲିଯାଏ । ଫଳରେ ନାତିମାନେ ଅଜାଙ୍କୁ ନେଇକରି ହସି ହସି ଗଡ଼ି ଯାଉଥିଲାବେଳେ ଅନେକ ସମୟରେ ଦେଖାଯାଏ ଯେ ଅଜା ବିଚରା ଆଉ ପ୍ରାଣରେ ନ ଥାନ୍ତି ।

ଏମିତି ଗୋଟିଏ ଅଜାଙ୍କର ସନ୍ଧାନ ବୁଲୁ ଆମର ପାଇଚ, ତା ନାଭ ଦାଦର ବଗିଚାରୁ । ପୋକକୁ ଆମର ଏଠି "ଜଉଆ" ପୋକ ବୋଲି କହନ୍ତି । ତାକୁ ଇଂରେଜିରେ ପ୍ଲାଣ୍ଟଲାଇସ୍ ( Plantlice ) ବୋଲି କୁହାଯାଏ ମଧ୍ୟ । କିନ୍ତୁ ଯିଏ ଯାହା କହୁ ଏ ପୋକଟି ହେଉଚି ନିଶ୍ଚୟ ତାଙ୍କ ପତଙ୍ଗ ଜଗତର "ଜଉଆ ଅଜା"—ଠିକ୍ ଆମ ଗାଁର ଯଦୁଅଜା ଭଳି ନିରୀହ ଲୋକଟିଏ ।

ଆମ ଗାଁର ଭାଗବତ ଟୁଙ୍ଗି ତୁମେ ଦେଖିଛ ? ଏଇଟି ଦିନେ ଥିଲା ଆମ ଗାଁର ପ୍ରାଣ । ଆଗେ ବଡ଼ ବଡ଼ ଆମାନେ ଭାଗବତ ଗୋସେଇଁଙ୍କୁ ଆଣି ଥାପିଥେଲେ । ଭାଗବତ ଗୋସେଇଁ ଥେଲେ ସେତେବେଳେ ମହାପ୍ରତାପୀ ଠାକୁର । ଡାକିଦେଲେ ସେ ଠାକୁର ଓ କରୁଥେଲେ । ବଡ଼ ବଡ଼ ବାବାଜୀମାନେ କୁଆଡ଼େ ଆଗେ ଏଠେଇଁକି ଆସୁଥେଲେ; କିନ୍ତୁ ଆଜିକାଲି ଆଉ ସେ ସବୁ କିଛି ନାହିଁ । କୁଆଡ଼େ ଗଲେଣି ଭାଗବତ ଗୋସେଇଁ । ଗତ ଯୁଦ୍ଧବେଳେ ଆମ ଗାଁଠୁ ଦଶମାଇଲ ଦୂରରେ ବୋମା ପଡ଼ିଲା । ତା ପରଦିନ ପଲଟଣମାନେ ଆସି ଜବତ୍ କରିନେଲେ ଆମର ଏଇ ଭାଗବତଟୁଙ୍ଗୀଟାକୁ । ପଲଟଣଙ୍କ ଉପରେ ବାବାଜୀମାନେ ଆଉ

ଆସିଲେ ନାହିଁ ଏ ଗାଁକୁ । ସେଇ ଦିନଠାରୁ ଜାଣ ଭାଗବତ ଗୋସେଇଁ ଅନ୍ତର୍ଦ୍ଧାନ ହୋଇଗଲେ । ଆଉ ନାହିଁ ଏବେ ତାଙ୍କର ସେ ମହିମା । ଏବେ ଆମ ଗାଁର କ୍ଲବ ବସିଛି ଏଠେଇଁ । ରେଡ଼ିଓ ପାଟିରେ ଭାଗବତ ପଢ଼ା ବି ବନ୍ଦ ହେଲାଣି ଏଠାରୁ କେତେବେଠାରୁ ।

ସେ ଭାଗବତ ଟୁଙ୍ଗୀ କଥା ଛାଡ଼ । ପଦୁଅଜାଙ୍କ କଥା କହିବାକୁ ଯାଇ ମୁଁ ଭାଗବତ ଗୋସେଇଁଙ୍କ କଥା କହିବାକୁ ଲାଗିଲିଣି । ପଦୁଅଜା—ସେ ପୁଣି କିଏ ଜାଣ ? ଏଇ ଭାଗବତ ଟୁଙ୍ଗୀ ଦେଖିବାକୁ ଯଦି ତୁମେ କେବେ ଆସିବ ତେବେ ଦେଖିବ ଯେ ଏ ପିଣ୍ଡାରେ ଜଣେ ଦାଢ଼ିଆ ଲୋକ ଅନେକ ସମୟରେ ବସି ଥାଆନ୍ତି । ସେଇ ଆମର ପଦୁଅଜା । ପିଲାଠୁଁ ବୁଢ଼ା ଯାକେ ଗାଁଟା ଯାକର ସମସ୍ତଙ୍କ ଅଜା ସେ । ସମସ୍ତେ ତାଙ୍କ ସାଙ୍ଗରେ ଥଟ୍ଟା ଖେଳନ୍ତି । କିଏ ତାଙ୍କ ବଟୁଆ ଲୁଚେଇ ଦେଲାଣି ତ କିଏ ତାଙ୍କ ଦାଢ଼ୀ ଟାଣି ଦେଲାଣି । ଥଟ୍ଟାରେ ଥଟ୍ଟାରେ କିଏ ତାଙ୍କୁ ଦି ବିଧା ଦେଲାଣି ତ କିଏ କଲେରା ଇଞ୍ଜେକ୍‌ସନ ଦବା ବାହାନାରେ ଛୁଞ୍ଚିଟାଏ ଟପ୍ କରି ଫୋଡ଼ିଦେଲାଣି । ଏତେ ଅବସ୍ଥାସତ୍ତ୍ୱେ କେହି ତାଙ୍କୁ ଦିନେ ହେଲେ ରାଗିବାର ଦେଖିନାହିଁ । କୁଆଡ଼େ ରାଗ ହେଇକରି କିଛି ଜିନିଷ ତାଙ୍କ ଦିହରେ ନାହିଁ ଆଦୌ । ଏତେ ସରଳ ନିରୀହ ମଣିଷ ପୁଣି ପୃଥିବୀରେ ଥାଆନ୍ତି ?

ଏ ହେଲେ ଆମ ଗାଁର ପଦୁଅଜା । ବର୍ତ୍ତମାନ ଶୁଣ କେମିତି ସେଦିନ ମୁଁ ଠାବ ପାଇଲି "ପତଙ୍ଗ ଜଗତର ପଦୁଅଜା"ଙ୍କର । ଆହା କେଡ଼େ କଷ୍ଟ ସତେଟି ଏ ଅଜା ପଦ ! ତୁମ ହସ କାନ୍ଦକୁ କେହି ନ ଦେଖି ସମସ୍ତେ ଖାଲି ତୁମ ସାଥିରେ ଲାଗିଥିବେ ଆଉ ହସୁଥିବେ ରାତିଦିନ ! ଆଉ ଅଜାବୋଲି ସବୁକିଛି ସହିଯିବ ତୁମେ !

ଆଜି ସକାଳେ ମୁଁ ଆମ ସ୍କୁଲ ଫାରମ୍‌କୁ ଯାଇଥିଲି । ବୋଉ ପଠେଇଥିଲା ମତେ ନାଭମାଳୀଠୁଁ କୋବି ଆଣିଲେ ଯାଇ ରୋଷେଇ ହବ । ସକାଳୁ ସକାଳୁ ଫାରମ୍‌କୁ ଯାଇ ମୁଁ ଦେଖେ ତ ବିଚରା ନାଭ ମାଳୀଟି ଭାରି ବ୍ୟସ୍ତ ହେଇ ଏକଡ଼ ସେକଡ଼ ଧାଇଁଛି । ଗୋଟାଏ ହାତରେ ତାର ପିଚକାରୀ ଆଉ ଆରହାତରେ ତାର ଝୁଲୁଥାଏ ଗୋଟାଏ ବାଲ୍‌ଟି । ନାଭ

ଏମିତି ବ୍ୟସ୍ତ ହେବାର ଦେଖିଲେ ବେଳେ ବେଳେ ହସ ଲାଗେ । ଟିକିଏ ଟିକିଏ କଥାରେ ଭାରି ବ୍ୟସ୍ତ ହୋଇପଡେ ନାଭ । ମୋ ଉପରେ ଯେମିତି ନଜର ପଡ଼ିଯାଇଚି ତାର, ବଗିଚା ସେକଡୁ ପାଟିଟିଏ କଲା, "ହୋ ଛୁଆ ବାବୁ ! ଦୂରେଇ ରହ, ଦୂରେଇ ରହ — ଡିଇଟି ପଡ଼ୁଚି ପରା !"



( "ହୋ ଛୁଆ ବାବୁ ! ଦୂରେଇ ରହ, ଦୂରେଇ ରହ-ଡଇଟି ପଡ଼ୁଛି ପରା !"
ପାଟିଟାଏ କଲା ନାଭ ମାଳୀ )

ନାଭ ଡ଼ିଡ଼ିଟିକୁ ଡ଼ିଇଟି ବୋଲି କହେ । ନାଭ ଆମର କଲିକତାରେ ସାହେବ ବଗାନରେ କାମ କରୁଥିଲା । ବେଳେ ବେଳେ ଇଂରେଜିରେ ସେ କଥାବାର୍ତ୍ତା କରେ; କିନ୍ତୁ ସେ ଇରେଜି ଏଡେ କଡା ଇଂରେଜି ଯେ ଆମେ ସବୁ ବୁଝିପାରୁ ନା ଆଦୌ ତା କଥା ।

ମୁଁ ପାଟିକଲି ଏ ମୁଣ୍ଡରୁ—

"ହୋ ନାଭ ଦାଦ ! କଉ କଥା କଅଣ ? ଡିଇଟିଗୁଡ଼ାକ ସକାଳୁ କାହିଁ ଛିଞ୍ଚି ପକାଉଚ ମ ଗଛବୃଚ୍ଛଗୁଡ଼ାଙ୍କ ଉପରେ ? କଉ କଅଣ ପୋକ ବଂଶ ଧ୍ୱଂସ କରିବ ନା କଅଣ ? ପୋକମାନେ କଅଣ ବଞ୍ଚିବେ ନାହିଁ, ଖାଲି ତମ କୋବିମାନେ ବଞ୍ଚିବେ ?"

ନାଭ ଦାଦ ରାଗିଗଲେଣି କେତେବେଳୁଁ । ଟିକିକରେ ସେ ଏମିତି ରାଗିଯାନ୍ତି; କିନ୍ତୁ ଆମେ ତାଙ୍କ ରାଗକୁ ଆଦୌ ଡରକୁ ନଉନାହିଁ ।

ମୋ କଥା ଶୁଣି ନାଭ ଚଡ଼ ଚଡ଼ ହୋଇ କହିଲା—

"ଛୁଆ ବାବୁ, ତମର ଖାଲି ସେଇ କଥା । ହଇଓ ଏ ସବାଖିଆ ପୋକଗୁଡ଼ାକ ପରା ମୋ ଗଛକୁ ଶୋଷି ପାଉଚନ୍ତି ଛୁଆଖାଇ ଡାହାଣୀ ଭଳିଆ ! ଏଥିକୁ ଡ଼ିଇଟି ପକାଇ ତାଙ୍କୁ ନ ମାରିବା ତ କାମ ଚଳିବ କେମିତି ?"

ମୁଁ ଚାଲିଚାଲି ହୋଇ ନାଭ ପାଖକୁ ଗଲି । ମତେ ଦେଖି ନାଭ କହିଲା—

"ହେଇ ଦେଖିଲ ଏ ପୋକଙ୍କୁ ! ମୋ କୋବି ପତରକୁ ଶୋଷି ଶୋଷିକିନା କେମିତି ଦୁହିଁ ଦେଲେଣି ମୋ ଗଛଗୁଡ଼ାଙ୍କୁ, ଆଉ ଆପେ କେମିତି ଟିଙ୍କଦେଇରେ ଫୁଲିଚନ୍ତି, ଦେଖିଲ !"

ମୁଁ ଚାରିଆଡ଼କୁ ଚାହିଁଲି । କାହିଁ ? କିଏ କାହିଁ ? କାହାକୁ ମୁଁ ଦେଖି ପାରିଲି ନାହିଁ । ମୁଁ ପଚାରିଲି—

"କାହିଁ ହୋ ଦାଦ ! କୋଉଠି ? କିଏ ?"

ନାଭମାଳୀ ମୋ ମୁଣ୍ଡଟାକୁ ନେଇ ଗେଲରେ ଗେଲରେ ମାଡ଼ି ଦେଲା ଗୋଟାଏ କୋବି ପତ୍ର ତଳେ । ତା ପରେ ହସି ହସି ସେ କହିଲା—

"ଦେଖ, ଆଖି ମାଡ଼ିକରି ଦେଖୁନ । ଏଇଆଙ୍କ ପେଇଁ ତେମେ ଏତେ ଓକିଲାତି କରୁଚ । ନାଇଁ ?"

ମୁଁ ପତ୍ର ତଳକୁ ଭଲକରି ଚାହିଁଲି । ଦେଖିଲାବେଳକୁ ସତକୁ ସତ ଗୋଟିଏ ଗୋଟିଏ ଛୋଟିଆ ପୋକ ପତ୍ରର ଶିରାକୁ କାମୁଡ଼ି ଧରି ଚୁପ୍‌ଚାପ୍ ହୋଇ ପଡ଼ିଛନ୍ତି । ସତେ ଯେମିତି ଉଙ୍କୁଣି ମାନେ ଲାଗିଥାଆନ୍ତି ସେ ଗଛରେ । ମୁଁ ପଚାରିଲି—

"ହଇଓ ଦାଦ ! ଏଗୁଡ଼ାକ କି ପୋକ କଓ ?"

ରାଗଫାଗ ଭୁଲିଯାଇ ନାଭମାଳୀ ସେତେବେଳକୁ ହସିଲାଣି । ନାଭ ହସିଲେ ଖାଲି ଇଂଲିସ୍‌ରେ ହସେ । କଅଣ ଗୁଡ଼ାଏ କହି କହି ସେ ହସୁଥାଏ । ଖାଲି କେତୋଟା କଥା ବୁଝିହୋଇପାରୁଥାଏ । ତୁନି ହୋଇ ମୁଁ ବସିଥାଏ । ନାଭ ସେତେବେଳେ ବୁଝିଲା ଯେ ଇଂଲିସ୍‌ରେ ସେ ମତେ ବୋକା କରିଦେଲାଣି ସେଇଠୁ ପାଇ ଓଡ଼ିଆରେ ସେ କହିଲା—

"ଆରେ ଛୁଆ ବାବୁ ! ଏଇ ପୋକଗୁଡ଼ାଙ୍କୁ ସାହେବମାନେ କହନ୍ତି "ପ୍ଲାଣ୍ଟଲାଇସ୍ ।" କଲିକତାରେ ଥିଲାବେଳେ ମୁଁ ଏଗୁଡ଼ାଙ୍କୁ ପାଇ ଚହ୍ନିଲି । ଏ କ'ଣ କମି

ପୋକ କଉ ? ଗଛ ପତ୍ର ତ ଯାହା ଖାଇବେ ଖାଇବେ, ଆଉ ଆଉ ପୋକଙ୍କୁ ପର ଗୁଆ ନଡ଼ିଆ ଦେଇ ନିମନ୍ତ୍ରଣ କରି ଡାକି ଆଣିବେ ମୋ ବାଗଚାକୁ !"

"କେମିତି ?" ମୁଁ ତାକୁ ପଚାରିଲି ।

ସେ କହିଲା—

"ଦେଖ, ଏଇ ପୋକଙ୍କୁ ଗାଈ କରିବା ପାଇଁ ପିମ୍ପୁଡ଼ିମାନେ ଆସି ରୁଣ୍ଡହେବେ । ଯଁବାଳୁଆ ଗୁଡ଼ାକ ବି କୁଆଡ଼ୁ ନାହିଁ କୁଆଡ଼ୁ ଗନ୍ଧ ଶୁଙ୍ଘି ଶୁଙ୍ଘି ଦଉଡ଼ିବେ ଏଠିକି । ବାର ଜାତିର ପୋକ ଆସି ରୁଣ୍ଡହେବେ । ମୋର ସେଥିକୁ ପାରେ କଉ ହୋ ! ଯିଏଙ୍କୁ ମୂଳୁମାଇଲେ ସରିବ ।"

"ପିମ୍ପୁଡ଼ିମାନଙ୍କ ଗାଈ ?" ଏ କଥାଟା ଶୁଣିଲି ବେଳଠୁଁ ମତେ କେମିତି କେମିତି ଚହ୍ଲାଚହ୍ଲା ଲାଗିଲା । ମୁଁ ଟିକିଏ ଭାବିଲି । ମୋର ସାଙ୍ଗ କୃଷକ-ପିମ୍ପୁଡ଼ିମାନଙ୍କ କଥା ମୋର ମନେ ପଡ଼ିଗଲା ।

ମୁଁ ନାଭଦାଦାଙ୍କୁ ପଚାରିଲି—

"ହଇଓ ନାଭଦାଦା ! ପିମ୍ପୁଡ଼ିମାନେ ଯାକୁ କେମିତି ଗାଈ କରନ୍ତି ଟିକେ କହିଲ !"

ନାଭଦାଦା କହିଲେ—

"ଆରେ ବାବୁ ! ପିମ୍ପୁଡ଼ିଗୁଡ଼ାକ କଣ କମି ସିଆଣିଆ କଉ ? ସେ ପରି ଜାଣନ୍ତି ଏଇ ପୋକଗୁଡ଼ାଙ୍କୁ ଟିକିଏ ପାମ୍ପଲାପାମ୍ପଲି କଲେ ବେଶ୍ ମିଠା ସରବତ ଥୋଡ଼ାଏ ଥୋଡ଼ାଏ ଏ ପୋକ ଢାଳିଦିଅନ୍ତି ସେ ପିମ୍ପୁଡ଼ିଗୁଡ଼ାଙ୍କ ମୁହଁରେ !"

"ମିଠା ସରବତ ?" ମୁଁ ନାଭଦାଦାଙ୍କ ମୁହଁକୁ କାବାହୋଇ ଅନେଇଲି ।

"ଆରେ ହଇହୋ ! ମିଠା ସରବତ ବୋଇଲେ ଚିନିରସ !" ନାଭଦାଦା ହସିହସି କହିଲେ ।

ନାଭଦାଦା ସ୍କୁଲ୍‌ଫାରମର ମାଳୀ । ମାଳୀ ହେଲେ କଅଣ ହବ ? ଜୀବନଟାଯାକ ତାଙ୍କର କଟିଲାଣି ଏଇ ଗଛପତ୍ର, କୀଟପତଙ୍ଗ ଆଉ ପଶୁ ପକ୍ଷୀଙ୍କ ପିଛାରେ । କେତେ ଜାତିକା ଗଛ, କେତେ ଜାତିକା ପୋକ, ପ୍ରଜାପତି, କଙ୍କି ଆଉ ଚଢ଼େଇ ଏ ମୂଲକରେ ଅଛନ୍ତି ଆଉ କାହାର ସ୍ୱଭାବ କେମିତି ଏ ସବୁ କଥା ଯେମିତି ତାଙ୍କ ନଖ ଅଗରେ ଲେଖା ହୋଇଥାଏ । ତାଙ୍କ କଥା ଶୁଣିବାକୁ ମୋର ଆଗ୍ରହ ଦେଖି ନାଭଦାଦା ଖୁବ୍ ଖୁସି ହୋଇ କହିଲେ—

"ଝୁଆବାବୁ ! ତମକୁ ଆଶ୍ଚର୍ଯ୍ୟ ଲାଗୁଚି ପରା । ନାହିଁ ? ତମେ କହୁଚ ଏତେ ଟିକେ ପୋକ, ଇଏ କେମିତି ଚିନିସରବତ କରି ପିମ୍ପୁଡ଼ିମାନଙ୍କୁ ଖାଇବାକୁ ଦିଏ ! ନାହିଁ ? ଅଚ୍ଛା ମୁଁ ପଚାରୁଚି ତୁମକୁ । କହିଲ ଦେଖି—ତୁମ ଗାଈ କେମିତି ତୁମକୁ ଦୁଧ ଦିଏ । କୁଆଡୁ ଆଣେ ସେ ସେଇ ଦୁଧକୁ ? ସେ ତ ଖାଏ ଘାସ, ପିଏ ତୋରାଣି, ଆଉ ଦୁଧ ଦିଏ କୋଉଠୁ ? ସେମିତି କିଛି ଯନ୍ତ୍ର ତା ଦେହରେ ଅଛି ନା ! ସେମିତି ବାବୁ, ଏ ପୋକ ପେଟରେ ଏମିତି ଯନ୍ତ୍ର ଅଛି ଯାହା ବଳରେ ଏ ପୋକ ଗଛରୁ ଯୋଉ ରସ ଖାଏ ତାକୁ ତା ପେଟରେ ଚିନିସିରା ଭଳି ମିଠାରସଟାଏ କରି ରଖିଥାଏ । ପିମ୍ପୁଡ଼ିକୁ ଏକଥା ମାଲୁମ; ପିମ୍ପୁଡ଼ି ତ ପୋକଙ୍କ ଭିତରେ ସବୁଠୁ ବୁଦ୍ଧିଆ । ଆମ ମଣିଷଙ୍କପରି ସେ ତା ଘରେ ଗାଈ ରଖେ । ଏଇ ପୋକଗୁଡ଼ାକ ହେଉଛନ୍ତି ତାଙ୍କ ଗାଈ । ଯାଙ୍କୁ ଦୁହିଁ କରି ପିମ୍ପୁଡ଼ି ଚିନିରସ ପାଏ । କେମିତି ଦୁହେଁ ଜାଣିଚ ? ପିମ୍ପୁଡ଼ି ତା ଗାଈଙ୍କୁ ଆଣି ଗଛରେ ଛାଡ଼େ—ଆମେ ଯେମିତି ଆମ ଗାଈଙ୍କୁ ଚରେଇବାକୁ ପଡ଼ିଆକୁ ନଉ ସେମିତି । ଏ ପୋକ ଗଛରେ ଲାଗି ଗଛରୁ ରସ ଶୋଷନ୍ତି । ଏଣେ ପିମ୍ପୁଡ଼ି ସଜ ହେଇଥାଏ । ଯେମିତି ଥୋଡ଼ାଏ ସମୟ ଧରି ଏ ପୋକ ଗଛରୁ ରସ ଶୋଷି ଟିକିଏ ଫୁଲେ, ପିମ୍ପୁଡ଼ି କଅଣ କରେନା ପଛପଟୁ ଆସି ତା ଗାଈକୁ ଛନ୍ଦିଲା ଭଳି ଦି ଗୋଡ଼ରେ ମାଡ଼ିବସେ । ତା'ପରେ ନିଜ ଶୁଣ୍ଢ ଲଗେଇ ପିମ୍ପୁଡ଼ି ଏ ପୋକ ପେଟରେ ଟିକିଏ ସଲସଲ କରିଦିଏ । ଆମେ ଯେମିତି ଗାଈ ଦୁହିଁବା ପୂର୍ବରୁ ବାଛୁରୀ ଲଗଉ ସେମିତି । କୁତୁକୁତୁ ହେଇ ହେଇ ଏ ପୋକ ଏତେ ହଇରାଣ ହେଇଯାଏ ଯେ ପିମ୍ପୁଡ଼ିକୁ ଖୋସାମତ କରିବାକୁ ଟିକିଏ ଚିନିରସ ତା ପେଟରୁ ବାହାର କରିଦିଏ । ସେଇତକକୁ ଖାଇ ପିମ୍ପୁଡ଼ି ମହା-ଆନନ୍ଦରେ ବୁଲେ ।"

ନାଭଦାଦିଙ୍କ କଥା ଶୁଣି ମୁଁ ତାଜୁବ ହେଲି । ପିମ୍ପୁଡ଼ି ଏ ପୋକମାନଙ୍କୁ କୁତୁକୁତୁ କରି ହଇରାଣ କରିପକାଏ ? ଇଏ କଅଣ ଗାଈ ଦୁହାଁ ନା ଅଜାନାତି ରହସ୍ୟ ? ଏ ପୋକଟି କଥା ଶୁଣୁଶୁଣୁ ଯଦୁଅଜାଙ୍କ କଥା ମୋର ମନେ ପଡ଼ିଲା ।

ନାଭଦାଦି କହିଲେ—

"ଇଏ ତ ଗଲା ପିମ୍ପୁଡ଼ିଙ୍କ କାମ । ବାକୀ ଆଉ ଗୋଟାଏ କଥା ଶୁଣିବ ଝୁଆ ବାବୁ ? ଏଇ ବିଚରା ପୋକଗୁଡ଼ାକଙ୍କ କପାଳରେ ଏତିକି ହୀନଅବସ୍ଥା ଥାଏ ହୋ ! ଦେଖ, ଯିଏ ଯେମିତି ପାରିଲା ସେମିତି ଲାଗିଲା ଏ ବିଚରା ପୋକଙ୍କ ସାଙ୍ଗରେ । କିନ୍ତୁ ଏ ବିଚରା ଏତେ

ନରୀହ ! ଭଲ କାହାକୁ କାମୁଡ଼ନ୍ତା କି ଡରେଇ ଦଅନ୍ତା ପିମ୍ପୁଡ଼ି ଦେଖେଇ । ସେକଥା ନାହିଁ । ଚୁପ୍‌ଟି ହେଇ ପଡ଼ିଥିବ ଏକା ଠାଆକେ । ଆଉ ସମସ୍ତଙ୍କ ଅଳଝଳ ସହିବାପେଇଁ ସତେ ଯେମିତି ଯ୍ୟାଙ୍କର ଜନ୍ମ । ହଁ, କହୁଥିଲି ପରା କେତେ ହୀନମାନ ଇଏ ହୁଅନ୍ତି । ଶୁଣିବ ଗୋଟାଏ ମଜାକଥା ଛୁଆବାବୁ ? ହେଇଚି ଗୃହିଁ ! ଜାତିଏ ବଙ୍କାଉ୍ ବରୁଡ଼ି ଅଛନ୍ତି । କୁନକୁନ ବରୁଡ଼ିଗୁଡ଼ାଏ । ଭାରି ସିଆଣିଆ ଜନ୍ତୁ ଏକା । ହେଇଚି ଗୃହିଁଲ, ନିଜର ତାଙ୍କର କ୍ଷମତା ନାହିଁ ନିଜ ଅଣ୍ଡା ଉଷୁମେଇ ଛୁଆ ଫୁଟେଇବା ପେଇଁ । ହେଲେ ଅଣ୍ଡାଦେବାରେ ଭାରି ସଉକ ସେ ବଙ୍କାଉ୍ ବରୁଡ଼ିଙ୍କର । ସିଏ କେମିତି ଅଣ୍ଡା ଦଅନ୍ତି ଜାଣ ? ସେମାନେ ଖୋଜି ଖୋଜି ବୁଲି ବୁଲି ଆସି ଏଇ ପୋକ ପାଖରେ ପହଞ୍ଚନ୍ତି । ଯେମିତି ଯ୍ୟାଙ୍କୁ ଦେଖନ୍ତି ଆଉ ତାଙ୍କ ଖୁସି ଦେଖେ କିଏ । ତତ୍‌କ୍ଷଣାତ୍ ଏଗୁଡ଼ାଙ୍କୁ ମାଡ଼ି ବସନ୍ତି ।

"କଣ ଖାଇଦିଅନ୍ତି ନା କଅଣ ?" ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି ।"

"ଆରେ ନାହିଁ ହୋ !" ନାଭଦାଦି ହସି ହସି କହିଲେ, "ଖାଇଦେଲେ ତ ବାଗ । ବରୁଡ଼ି କ'ଣ ଖାଇବାକୁ ଆସେ ? ସେ ଆସେ ଅଣ୍ଡା ଦବା ପେଇଁ ! ଯେମିତି କୁଆ ବସାରେ ଅଣ୍ଡା ଥୋଇଦେ କୋଇଲି ଚମ୍ପଟ୍ ମାରେ, ସେମିତି । ବରୁଡ଼ି କ'ଣ କରେନା ପୋକଙ୍କୁ ମାଡ଼ିବସି ଜବରଦସ୍ତି ଯ୍ୟାଙ୍କ ପେଟରେ ନିଜର ଅଣ୍ଡାତକ ପୂରେଇଦେଇ ଚମ୍ପଟ୍ ମାରେ । ବରୁଡ଼ି ଅଣ୍ଡାତକ ରହନ୍ତି ଏଇ ପୋକର ପେଟରେ । ପୋକ ପେଟର ଉଷୁମ



"ନାଇଁ ହୋ ବାବୁ" ନାଭ ଦାଦି ହସି ହସି କହିଲେ……ବରୁଡ଼ି କଅଣ କରେନା ପୋକକୁ ମାଡ଼ିବସି ତାପେଟରେ ନିଜର ଅଣ୍ଡାତକ ଭରିଦେଇ ଯାଏ…

ପାଇଁ ଦିନାକେତେ ପରେ ଅଣ୍ଡାମାନେ ଫୁଟନ୍ତି । ଅଣ୍ଡା ଫୁଟି ପୋକ ପେଟରେ ବରୁଡ଼ ଛୁଆ ସଲର୍ ବଲର୍ ହୋଇ ବୁଲନ୍ତି ବାଟ ଖୋଜନ୍ତି ବାହାରକୁ ବାହାରିବା ପାଇଁ । ହେଲେ ଏଡ଼େ ଏଡ଼େ ବଡ଼ ଆଉ ଏତେ ଛୁଆ କେମିତି ବା ବାହାରିବେ ଏଡ଼େଟିକେ ପୋକ ପେଟରୁ । ବିଚରା ପୋକଟି କଲରବଲର ହୋଇ ମରେ ।”

ମୁଁ ଅନେଇଥାଏ ନାଉଦାଦାଙ୍କ ମୁହଁକୁ କାବା ହୋଇ । ସେ ପୁଣି କହିଲେ—

“ଇଏ ତ ଗଲା ବରୁଡ଼ଙ୍କ କଥା । ଫେଏର ସଁବାଳୁଆ ଅଛନ୍ତି । ସଁବାଳୁଆ ତ ପକ୍‌କା ସିଆଣିଆ ଆଉ ପେଟୁଟାଏ ବି । ସେ ଆସେ ଖାଲି ଖାଇବା ଲୋଭରେ । ଗଛ-ପତ୍ରଙ୍କର ଭାରି ଶତ୍ରୁ ସେ । ପତ୍ର ଖାଉ ଖାଉ ଯଦି ତାର ନଜର ପଡ଼ିଗଲା ଏ ପୋକଙ୍କ ଉପରେ—ବାସ୍ ! ଆଉ କିଏ ତାକୁ ଅଟକେଇବ ? ଏ ପୋକ ତ ତାଙ୍କ ରସଗୋଲା ! ହେଲେ ରସଗୋଲାକୁ ତ ଆମେ ଟପ୍ କିନା ଗିଳିଦଉ । ମାତ୍ର ସଁବାଳୁଆ ତା ରସଗୋଲାକୁ ଟିକିଏ ଟିକିଏ କରି ଗୁଳୁଳେଇ ପାଳୁଳେଇ କରି ଖାଏ । ସଁବାଳୁଆ ପଛପଟୁ ଖାଉଥାଏ ଆଉ ଏ ପୋକ ବିଚରା ତ ପଡ଼ିଥାଏ । ଯିବ କୁଆଡ଼େ ? ସଁବାଳୁଆ କି ସହଜେ ଛାଡ଼େ ?”

“ତମେ ଏ ସବୁ କଥା ଆଖିରେ ଦେଖିଛ ନାଉଦାଦା !” ମୁଁ ପଚାରିଲି ।

ନାଉଦାଦା କହିଲେ—



( ମାତ୍ର ସଁବାଳୁଆ ତା'ରସଗୋଲାକୁ ଟିକିଏ ଟିକିଏ କରି ଗୁଳୁଳେଇ ପାଳୁଳେଇ କରି ଖାଏ )

“ଜାଇଁଲ କୁଆବାବୁ ! ଆମେ ପରା ଏଇ ଯୋକମାଛଙ୍କ ତାମସା ଦେଖି ଦେଖି ବୁଢ଼ା ହେଲୁଣି । ଏ ପୋକଗୁଡ଼ାଙ୍କୁ ସିନା ଡିଇଟି ପକେଇ ଆମେ ମାରୁଚୁ, ହେଲେ ଯାଙ୍କ ପ୍ରତି ମୋର ଦୟା ଆସେ ନା ବାବୁ ! କିନ୍ତୁ କଣ କରିବା ? ଆମ ପେଟ ବଞ୍ଚିଲେ ତ ଯାଇ ଆମେ ଅନ୍ୟକୁ ବଞ୍ଚେଇବା କୁଆବାବୁ !”

କୋଦ ଧରି ମୁଁ ଘରେ ପହଞ୍ଚିଲା ବେଳକୁ ବୋଉ ଏକବାରେ ଖଡ୍‌ଗହସ୍ତ ହେଇ ବସିଥିଲା । ମୁଁ ଟିକିଏ ସାକୁଲେଇ ହେଇ କହିଲି--

“ବୋଉ ମ ! ଆଜି ପତଙ୍ଗ ରାଇଜର “ଯଦୁଅଜା”ଙ୍କର ଦୁଃଖ ସୁଖ ଶୁଣୁଶୁଣୁ ସକାଳଟା କଟିଗଲା । ସେଇ ମତେ ଅଟକେଇ ଦେଲେ । ଭାରି ଦୁଃଖରେ ପଡ଼ିଚନ୍ତି ସେ ! ସେଇଥି ପେଇଁ ଡେରି ହେଲା ।”

“ଯଦୁଅଜା”ଙ୍କ ନାଁ ଶୁଣି ବୋଉର ରାଗ ଥମିଲା । ସେ କୋଦ ଧରି ହାଣ୍ଡିଶାଳକୁ ଗଲା । ମୁଁ ଚାଲିଲି ପଣଉଲୁଣି ବିଷୟରେ ଆଉ ସବୁ କଥା ପଢ଼ିବା ପାଇଁ ।



ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ, କଟକ—୨